


ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ମା'ର ସ୍ନେହ









Digitized by srujanika@gmail.com

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା :

# ମା'ର ସ୍ନେହ

[ 'ବିନ୍ଦୁର ଛେଲେ'ର ଓଡ଼ିଆ ରୂପାନ୍ତର ]

ଶରତ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟ

ଅନୁବାଦ :

ଶ୍ରୀ ନଟବର ସାହୁ, ବି. ଏସ୍‌ସି., ବି. ଇଡି (ଡିଷ୍ଟିଙ୍କସନ୍),
କୋବିଦ, ଡିପ୍-ଇନ୍-ବେଙ୍ଗଲି

ଗ୍ରନ୍ଥମନ୍ଦିର

Digitized by srujanika@gmail.com

ପ୍ରକାଶକ : ଅଭିରାମ ମହାପାତ୍ର

ଗ୍ରନ୍ଥମନ୍ଦିର, କଟକ-୨

ମୁଦ୍ରକ :

ସ୍ୱର ପ୍ରିଣ୍ଟିଂ ଓ୍ୱାର୍କସ୍, କଟକ-୧

ପ୍ରଥମ ମୁଦ୍ରଣ : ୧୯୮୪

ମୂଲ୍ୟ : ଟ ୫.୦୦

Digitized by srujanika@gmail.com

# ଏକ

ଯାଦବ ମୁଖାର୍ଜି ଓ ମାଧବ ମୁଖାର୍ଜି ଯେ ସହୋଦର ଭାଇ ନୁହନ୍ତି, ଏ କଥା ସେ ଦୁହେଁ ଭୁଲିଯିବା ସଙ୍ଗେ ସଙ୍ଗେ ବାହାର ଲୋକେ ମଧ୍ୟ ଭୁଲିଯାଉଥିଲେ । ଗରିବ ଯାଦବ ମୁଖାର୍ଜି ଅନେକ ଦୁଃଖ କଷ୍ଟ ସହି ସାନଭାଇ ମାଧବକୁ ଆଇନ୍ ପଢ଼ାଇଥିଲେ । ପରେ ବହୁ ଚେଷ୍ଟାକରି ଧନୀ ଜମିଦାରଙ୍କର ଏକମାତ୍ର ଅତି ସୁନ୍ଦରୀ କନ୍ୟା ବିନ୍ଦୁବାସିନୀକୁ ଭ୍ରାତୃବଧୂ କରି ଘରକୁ ଆଣିଥିଲେ । ବିନ୍ଦୁବାସିନୀ ଏ ଘରକୁ ଯେଉଁଦିନ ଏତେ ରୂପ ଓ ଦଶ ହଜାର ଟଙ୍କା ଯଉତୁକ ଧରି ଆସିଲା, ସେଦିନ ବଡ଼ବୋହୂର ଆଖିରୁ ଆନନ୍ଦର ଅଶ୍ରୁ ବୋହିଯାଉଥିଲା । ଘରେ ଶାଶୂ ନଣନ୍ଦ କେହି ନଥିଲେ । ସେ ଥିଲା ବିନ୍ଦୁବାସିନୀର ମୁରବି । ସାହି ପଡ଼ିଶାଙ୍କୁ ନିଜ ସାନ ବୋହୂଟିର ମୁହଁ ଦେଖାଇ କହିଥିଲା - ବୋହୂ ନୁହେଁ ତ ସାକ୍ଷାତ ଲକ୍ଷ୍ମୀପ୍ରତିମା । ବୋହୂ ଆଣିବ ତ ଏମିତିକା ବୋହୂ ଆଣିବ ।

କିନ୍ତୁ ଦି'ଦିନ ପରେ ତାଙ୍କର ଏ ଭୁଲ ଧାରଣା ଭାଙ୍ଗିଗଲା । ଦି' ଦିନ ଭିତରେ ସେ ଜାଣିଗଲେ ଯେ ସାନବୋହୂ ଯେତେ ସୁନ୍ଦରୀ ଓ ଯାହା ଟଙ୍କା ପଇସା ଆଣିଛି ତାର ବଳିଗୁଣ ହେଉଛି ଅଭିମାନୀ ଓ ଅହଙ୍କାରୀ । ଦିନେ ସେ ତା ସ୍ୱାମୀଙ୍କୁ ସୁଯୋଗ ଦେଖି କହିଲା—ରୂପ ଓ ଧନ ଦେଖି ବୋହୂ କରି ଘରକୁ ଆଣିଲ ସତ, ହେଲେ ଏ ହେଉଛି ବିଷାକ୍ତ ଗ୍ରେଷ୍ଟ ସାପଟିଏ ।

କଥାଟା ଯାଦବ ତ ବିଶ୍ୱାସ କଲେନାହିଁ—ଓଲଟି ମୁଣ୍ଡ ହଲାଇ ହଲାଇ କଚେରୀକୁ ଚାଲିଗଲେ । ସେ ଜମିଦାରୀ ସିରସ୍ତାରେ ନାଏବୀ କାମ

Digitized by srujanika@gmail.com

କରନ୍ତି । ସନ୍ଧ୍ୟାରେ ଘରକୁ ଫେରି ପୂଜା ପାଠ ଇତ୍ୟାଦି କରନ୍ତି । ମାଧବ ତାଙ୍କଠାରୁ ଦଶ ବାର ବର୍ଷ ସାନ । ଏବେ ଓକିଲାତି ପାଶ୍ କରି ନୂଆ ଓକିଲାତି ବ୍ୟବସାୟ ଆରମ୍ଭ କରୁଥିଲା ।

ଦିନେ ସେ ଆସି ତା' ଭାଉଜଙ୍କୁ କହିଲା – ଭାଇଙ୍କର କ'ଣ ଟଙ୍କାଟା ବଡ଼ ହେଲା ? ଦି'ଦିନ ପରେ ମୁଁ ପରା ଟଙ୍କା ରୋଜଗାର କରିଥାନ୍ତି ।

ଅନ୍ନପୂର୍ଣ୍ଣା କିଛି ନକହି ଚୁପ୍ ହୋଇ ରହିଲା ।

ଖାଲି କଣ ସେତିକି ? ବିନ୍ଦୁବାସିନୀର ଏପରି ଭୟଙ୍କର ମୂର୍ଚ୍ଛାରୋଗ ଥିଲା ଯେ ରୋଗ ଆରମ୍ଭ ହେବାକ୍ଷଣି ଡାକ୍ତର ନ ଡାକି ଉପାୟ ନଥିଲା । ଘର ଗୋଟାକର ଲୋକଙ୍କର ମୁଣ୍ଡ ଏଥିପାଇଁ ଝିମ୍ ଝିମ୍ ହୋଇଯାଉଥିଲା ।

ସୁତରାଂ ବଡ଼ଘର ଝିଅ ଦେଖି ବାହା ଦେବାଟା ଯେ ଠିକ୍ ହେଲନାହିଁ ଏକଥା ସମସ୍ତେ ସ୍ୱୀକାର କଲେ ବି ଯାଦବ କିନ୍ତୁ ସ୍ୱୀକାର କଲେନାହିଁ । ସେ ପ୍ରତିବାଦ କରି କହିଲେ—ମୋ ମା'ର ଏତେ ସୁନ୍ଦର ରୂପ କ'ଣ ସବୁ ବ୍ୟର୍ଥ ହୋଇଯିବ ? ନା ନା, କେବେ ନୁହେଁ ।

ଦିନେ ସାନବୋହୂ କିଛି ଗୋଟାଏ ସାମାନ୍ୟ କଥାରୁ ମୁହଁ ଓହଳାଇ ବସିଥିବାର ଦେଖି ଅନ୍ନପୂର୍ଣ୍ଣା ଭୟକରିଗଲା । ତା ମନ କ'ଣ ହେଲା କେଜାଣି—ତା'ର ଦେଢ଼ବର୍ଷର ପୁଅ ଅମୂଲ୍ୟଚରଣ ନିଦରେ ଶୋଇଥିଲା । ତାକୁ ଶୋଇଥିବା ଅବସ୍ଥାରେ ନେଇଆସି ସାନବୋହୂର କୋଳରେ ଶୁଆଇ ଦେଇ ପଳାଇଗଲା ।

କଞ୍ଚା ନିଦରୁ ଉଠିବାରୁ ଅମୂଲ୍ୟ କାନ୍ଦିଉଠିଲା । ବିନ୍ଦୁ ମୂର୍ଚ୍ଛା ହୋଇଯାଇଥିଲା । ସେ କୌଣସି ପ୍ରକାରେ ମୂର୍ଚ୍ଛା କବଳରୁ ଆତ୍ମରକ୍ଷା କରି ପୁଅକୁ ଛାତିରେ ଚାପି ଧରି ଘର ଭିତରକୁ ଚାଲିଗଲା । ଆଢୁଆଳରେ ଥାଇ ଅନ୍ନପୂର୍ଣ୍ଣା ଏସବୁ ଲକ୍ଷ୍ୟ କରୁଥିଲେ । ମୂର୍ଚ୍ଛା ରୋଗର ଏ ଯେ ଏକ ଅବ୍ୟର୍ଥ ଦୈବୀ ଔଷଧ ନିଜେ ଆବିଷ୍କାର କରିଥିବାରୁ ସେ ମନେ ମନେ ଭାରି ଖୁସି-ହୋଇଗଲେ ।

ଘର ଗୋଟାକର ସମସ୍ତ ଦାୟିତ୍ୱ ଅନ୍ନପୂର୍ଣ୍ଣା ବହନ କରିଥିବାରୁ ସେ ପିଲାଟିକୁ ଠିକ୍ ମଣିଷ କରିପାରୁନଥିଲେ । ସାରା ଦିନର ଖଟଣି ପରେ ସେ

Digitized by srujanika@gmail.com

ରାତରେ ଠିକେ ଭଲଭାବରେ ଶୋଇପାରୁନଥିବାରୁ ତାଙ୍କ ଦେହ ଖରାପ ହେଉଥିଲା । ଯାହେଉ ସେହି ଦାୟିତ୍ୱ ଅଙ୍କଠୁ ସାନବୋହୂ ଗ୍ରହଣ କଲା ।

ପ୍ରାୟ ମାସକ ପରେ ଦିନେ ବନ୍ଧୁବାସିନୀ ପୁଅକୁ କୋଳରେ ଧରି ଆସି ବଡ଼ବୋହୂଙ୍କୁ କହିଲା—ନାନୀ, ଅମୂଲ୍ୟର ଦୁଧ କାହିଁ ?

ଅନ୍ନପୂର୍ଣ୍ଣା କରୁଥିବା କାମ ଛାଡ଼ି ଦେଇ ତରବରରେ କହିଲେ— ଟିକଏ ରହିଲେ ଭଉଣୀ—କ୍ଷୀର ଟିକେ ଗରମ କରି ଦେଉଛି ।

ସେତେବେଳ ଯାଏ ଘରେ ପଶି କ୍ଷୀର ଗରମ ହୋଇନଥିବା ଦେଖି ବନ୍ଧୁ ରାଗିଯାଇଥିଲା । ରାଗରେ ଗରଗର ହୋଇ ସେ କହିଲା—ତୁମକୁ ପରା କାଲିଠୁଁ କହିଥିଲି—ଆଠଟା ଆଗରୁ ମୋର କ୍ଷୀର ଦରକାର । ଏବେ ନଅଟା ବାଜିଲାଣି । ତୁମକୁ ଯଦି କଷ୍ଟ ହେଉଛି, ତେବେ ସ୍ପଷ୍ଟ କରି ମନାକରିଦେଉନ—ମୁଁ ଅନ୍ୟ ବ୍ୟବସ୍ଥା କରିବି ।

ଅନ୍ନପୂର୍ଣ୍ଣା କହିଲେ—ତୋର ତ କିଛି କାମ ନାହିଁ । ତୋ ଭଳି ପୁଅକୁ କଜଳ ପିନ୍ଧାଇବା, ଖୁଆଇବା ପିଆଇବା କାମରେ ଥିଲେ ମୋର ମନେପଡ଼ୁଥାନ୍ତା । ଟିକଏ ଡେରି ହେଲେ କଣ ଚଳିବନି ?

ସାନବୋହୂ ଏଥିରେ ରାଗି ତମ ତମ ହୋଇ କହିଲା—"ତୁମକୁ ରାଣ ରହିଲା, ମୁଁ ଆଉ କୌଣସି ଦିନ ଅମୂଲ୍ୟର କ୍ଷୀର ଗରମ କରିବାକୁ କହିବିନି ।" ଏତିକି କହି ଅମୂଲ୍ୟକୁ ଭୂଇଁ ଉପରେ ଦୁର୍ଲିକିନା ବସେଇଦେଇ ଶିକାରୁ ଦୁଧ ବଡ଼ା ଆଣି ଚୂଲା ଉପରେ ବସାଇଦେଲା ।

ପିଲାଟା ତଳେ ବସି କାନ୍ଦିଉଠିଲା । ବନ୍ଧୁ ଅମୂଲ୍ୟର ଗାଲ ଚିପି ଦେଇ କହିଲା - ଚୁପ୍ କର ହତଭାଗା ! କାନ୍ଦିଲେ ମାରିପକାଇବି ।

ବନ୍ଧୁର ଆଚରଣ ଦେଖି ଦାସୀ ଦୌଡ଼ିଆସି ପୁଅକୁ କାଖେଇବାକୁ ଗଲାରୁ ବନ୍ଧୁ ତାକୁ ଆଖି ଦେଖେଇ କହିଲା—ଚାଲିଯା ମୋ ଆଗରୁ ।

ସେ ଆଉ ନ ଅଟେଇ ତା ବାଟରେ ଚାଲିଗଲା ।

ବନ୍ଧୁ ଆଉ କିଛି ନକହି ପୁଅକୁ କୋଳରେ ଧରି ଦୁଧ ଗରମ କରିବାକୁ ଲାଗିଲା ।

Digitized by srujanika@gmail.com

ବନ୍ଧୁ ସେଠାରୁ ଯିବା ପରେ ଅନ୍ନପୂର୍ଣ୍ଣା ଦାସୀକୁ ଦେଖାଇ କହିଲା—ଶୁଣିଲୁ ତା କଥା ? ଦିନେ ହସିଦେଇ କହିଥିଲି—ଅମୂଲ୍ୟକୁ ଭୁଲିନେ। ସେହି ଜୋର୍‌ରେ ସେ ଆଜି ମୋତେ ଋଣ ପକାଇଦେଇ ଚାଲିଗଲା।

ସେ ଯାହାହେଉ ଏମିତିଭାବେ ଅନ୍ନପୂର୍ଣ୍ଣାର ପୁଅ ଅମୂଲ୍ୟ ବନ୍ଧୁ କୋଳରେ ମଣିଷ ହେବାକୁ ଲାଗିଲା। ତାର ଫଳ ଏଇଆ ହେଲା ଯେ—ଅମୂଲ୍ୟ ନିଜ ମା'କୁ ନାନୀ ଓ ଖୁଡ଼ୀକୁ ମା ବୋଲି ଡାକିଲା।

## ଦୁଇ

ଏହା ପରେ ଚାରିବର୍ଷ ବିତିଯାଇଛି। ଯେଉଁଦିନ ଅମୂଲ୍ୟର ବିଦ୍ୟାରମ୍ଭ ଖୁବ୍ ଜାକଜମକରେ ପାଳନ କରାଗଲା, ତା ପରଦିନ ବନ୍ଧୁ ଅମୂଲ୍ୟକୁ ଧରି ଅନ୍ନପୂର୍ଣ୍ଣାଙ୍କ ପାଖକୁ ଆସି କହିଲା—ନାନୀ, ଅମୂଲ୍ୟ ପ୍ରଣାମ କରିବାକୁ ଆସିଛି। ତୁମେ ଟିକେ ପଦାକୁ ଆସ।

ଅନ୍ନପୂର୍ଣ୍ଣା ରୋଷେଇ ଘରେ ଥିଲେ। ବାହାରକୁ ଆସି ଅମୂଲ୍ୟର ବେଶ ପୋଷାକ ଦେଖି ଅବାକ୍ ହୋଇଗଲେ। ଆଖିରେ କଜଳ, କପାଳରେ କଜଳ ଟୋପା, ମୁଣ୍ଡର ବାଳ ଜଟା ପରି ବନ୍ଧା ହୋଇଛି, ବେକରେ ସୁନାହାର ପଡ଼ିଛି। ହଳଦୀ ରଙ୍ଗର ଲୁଗା ପିନ୍ଧିଛି। କାଖରେ ଆସନ ଓ କେତୋଟି ତାଳପତ୍ର। ହାତରେ ଦଉଡ଼ି ବନ୍ଧା କାଳି ଦୁଆତଟିଏ।

ବନ୍ଧୁ କହିଲା—ମା'ଙ୍କୁ ପ୍ରଣାମ କର।

ଅମୂଲ୍ୟ ପ୍ରଣାମ କଲା।

ପାଦରେ ତାର ଯୋତା ମୋଜା ନାହିଁ। ବିଲାତି ଲୁଗା ବି ଅମୂଲ୍ୟ ପିନ୍ଧିନି। ତା ବେଶ ପୋଷାକ ଦେଖି ଅନ୍ନପୂର୍ଣ୍ଣା କହିଲେ—ତୋତେ ଏତେ କଥା ଆସେ ବନ୍ଧୁ ? ପୁଅ ପାଠ ପଢ଼ିବାକୁ ଅନୁକୂଳ କରି ଯାଉଛି ବୋଧହୁଏ ?

Digitized by srujanika@gmail.com

ହସିଦେଇ ବନ୍ଧୁ କହିଲା—"ହଁ ସେ ପଢ଼ିବାକୁ ଯାଉଛି । ଗଙ୍ଗା ପଣ୍ଡିତଙ୍କ ଚାଟଶାଳୀକୁ ପଢ଼ିବାକୁ ଯାଉଛି । ଆଶୀର୍ବାଦ କର ନାନୀ—ପୁଅ ମୋର ଯେପରି ପାଠ ପଢ଼ି ବଡ଼ ମଣିଷ ହେଉ ।" ଟୋକର ଭୈରବଙ୍କୁ ଚାହିଁ ବନ୍ଧୁ କହିଲା—"ମୋ କଥା ପଣ୍ଡିତ ମହାଶୟଙ୍କୁ କହିବୁ । ମୋ ପିଲାକୁ ଯେପରି କେହି ମାରଧର ନକରନ୍ତି ।" ତା'ପରେ ଅନ୍ନପୂର୍ଣ୍ଣାଙ୍କୁ ପାଞ୍ଚଟଙ୍କା ଦେଇ କହିଲା—"ନାନୀ ଏ ଟଙ୍କା ରଖ । ଭଲକରି ପଣ୍ଡିତଙ୍କ ପାଇଁ ହଣ୍ଡା ଅନୁକୂଳ ସଜାଡ଼ିଦିଅ । କଦମ୍ବ ହାତରେ ଚାଟଶାଳୀକୁ ପଠାଇଦିଅ ।" ଏହା କହି ପୁଅକୁ କୋଳରେ ଧରି ଚାଲିଗଲା ।

ଅନ୍ନପୂର୍ଣ୍ଣା ଚକ୍ରବର୍ତ୍ତୀଙ୍କୁ ଦେଖେଇ କହିଲା—ପୁଅ ପାଇଁ କେତେ ବ୍ୟସ୍ତ । ହଜେ ତ ଜନ୍ମ କରିନାହିଁ—ଯଦି ଜନ୍ମକଲା ପୁଅ ତାର ହୋଇ-ଥାନ୍ତା, ତେବେ ସେ ଆହୁରି କେତେ ବ୍ୟସ୍ତ ହୋଇଥାନ୍ତା !

ଚକ୍ରବର୍ତ୍ତୀ କହିଲା—ଭଗବାନ ସେଇଥିପାଇଁ ତା କୋଳ ଖାଲି ରଖିଛନ୍ତି । ବୟସ ଏବେ ଅଠର କମ୍ବା ଉଣେଇଶି ହେଲାଣି ।

କଥା ନସରୁଣୁ ବନ୍ଧୁ ଫେରିଆସି କହିଲା—ନାନୀ, ଦେଢ଼ଶୁରଙ୍କୁ ତମେ ଟିକେ କହନ୍ତନ—ଆମ ଘର ଆଗରେ ଚାଟଶାଳୀଟିଏ ଖୋଲନ୍ତେ । ଚାଟଶାଳୀ ଖୋଲିବାର ସମସ୍ତ ଖର୍ଚ୍ଚ ମୁଁ ଦେବି ।

ହସି ହସି ଅନ୍ନପୂର୍ଣ୍ଣା କହିଲେ—ପୁଅ ତୋର ଘରୁ ଏବେ ଦ ଖୋଜ ଯାଇଛି । ଟିକିଏ ଅନୁପସ୍ଥିତରେ ତୋର ଯଦି ପୁଅ ପାଇଁ ଏତେ ଭାବନା, ତେବେ ଯାଇ ଚାଟଶାଳୀରେ ତା ପାଖରେ ବସୁନୁ ।

ବନ୍ଧୁ ଟିକିଏ ସରମି ଯାଇ କହିଲା—ସେ କଥା କହୁ କହୁନ ନାନୀ । ଆଖି ସାମନାରେ ଥିବା କଥା, ଆଖି ଆଢ଼ୁଆଳରେ ଥିବାଠାରୁ ଅଲଗା । ଦୁଷ୍ଟ ପିଲାଗୁଡ଼ାକ ପୁଅକୁ ମୋର ଶ୍ରେଷ୍ଠ ଦେଖି ମାରଧର କରିବେ—ସେଥିପାଇଁ କହୁଥିଲି ।

ଅନ୍ନପୂର୍ଣ୍ଣା କହିଲେ—ପିଲାମାନେ ତ ମାରଧର ହେବେ—ଏ ତ ସ୍ୱାଭାବିକ କଥା । ସମସ୍ତଙ୍କ ପିଲା ସମାନ । ଅନ୍ୟ ପିଲାମାନଙ୍କ ବାପା ମା

Digitized by srujanika@gmail.com

ଯଦି ପିଲଙ୍କୁ ଗୃହଶାଳୀ ପଠାଇ ଦେଇ ଧରି ଅଛନ୍ତି ତୁ ଅବା କାହିଁକି ରହି ନପାରିବୁ ?

ପର ସହି ତୁଳନା କରିବାକୁ ବନ୍ଦୁ ମୋଟେ ପସନ୍ଦ କରେନା । ସେ କହିଲା—ଅପା, ଧର ଯଦି କେହି ମୋ ପୁଅ ଆଖିରେ କଲମମୁନ ଗେଂଜିଦିଏ, ତେବେ କଣ ହେବ କହିଲ ?

ଅନ୍ନପୂର୍ଣ୍ଣା ହସିଦେଇ କହିଲେ, "ତେବେ ଡାକ୍ତରକୁ ଦେଖାଇବୁ । ମୁଁ କେବେ ଶୁଣିନି ପିଲମାନେ ଗୃହଶାଳୀରେ ଏକାଠି ପଢୁଥିଲା ବେଳେ କିଏ କାହାର ଆଖିରେ କଲମ ମୁନ ଗେଂଜି ଦେଇଛି ବୋଲି ।"

ବନ୍ଦୁ କହିଲା—"ତୁମେ ଏମିତି କାଣ୍ଡ ଶୁଣିନି ବୋଲି ଯେ ଆଉ ନହେବ କିଏ କହିପାରିବ ? ସେ ଯାହାହେଉ ତୁମେ ଆଜି ଦେଢ଼ଶୁରଙ୍କୁ ବୁଝ, ଦେଖିବା କଣ ସେ କହୁଛନ୍ତି ।"

ଅନ୍ନପୂର୍ଣ୍ଣା ଗମ୍ଭୀର ହୋଇ କହିଲେ—ଯାହା ତ ହେବ ଆଖିକୁ ଜଳ ଜଳ ହୋଇ ଦିଶିଲାଣି । ତୁ ଯେତେବେଳେ କଥାଟା ଉଠେଇଲୁଣି ନକରି ଛାଡ଼ିବୁନି । ସେ ନହେବା କଥା ମୁଁ ମୁହଁରେ ଧରିବିନି । ତୁ ତ ଦେଢ଼ଶୁର ପାଖରେ କଥାବାର୍ତ୍ତା କରୁଛୁ—ତୁ ଯାଇ କହ ।

ବନ୍ଦୁ ଏଥର ରାଗିଯାଇ କହିଲା—ତମେ ଯେତେବେଳେ ନ କହିବ, ମୁଁ ନିଶ୍ଚୟ କହିବି । ପାଠ ପଢ଼ିବାକୁ ମୁଁ ପୁଅକୁ ଏତେ ବାଟ ପଠେଇ-ପାରିବିନି । ସେଥିରେ ପୁଅର ପାଠ ହେଉ ବା ନହେଉ—ମୋ କଥା କାହାକୁ ଭଲ ଲାଗୁ ବା ନଲାଗୁ—ମୁଁ ପୁଅକୁ ଏତେ ଦୂର ପଠେଇବିନି । ଆଲୋ କଦମ୍ବ, ପଣ୍ଡିତଙ୍କୁ ସଞ୍ଜ ଦେଇ ଆସିବାକୁ ତତେ ପରା କହିଥିଲି—ଏମିତି ଆଁ ଟାକରି କାହିଁକି ସେଠି ସ୍ଥିରହୋଇଚୁ ?

ତାର ରାଗିଯିବାର ଦେଖି ଅନ୍ନପୂର୍ଣ୍ଣା କହିଲେ—ରହିଲେ କଦମ୍ବ, ସଞ୍ଜ ସକାଳ ଦେଉଛୁ, ନେବୁ । ଏମିତି ଉତଳା ହେଲେ ଚଳିବ ? ଆଚ୍ଛା ବନ୍ଦୁ—ତୋ ପୁଅ କଣ ବଡ଼ ହେବନି ? ତୁ କଣ ସବୁବେଳେ ଏମିତି ତାକୁ କାନତଳେ ରଖିଥିବୁ ନା କଣ ?

Digitized by srujanika@gmail.com

ବନ୍ଧୁ ସେ କଥା ନଶୁଣିଲା ପରି କଦମ୍ବକୁ କହିଲା—ଅବଧାନଙ୍କୁ ସଞ୍ଜା ଦେଇ ତାଙ୍କ ପାଦଧୂଳି ମୋ ପୁଅ ମୁଣ୍ଡରେ ଦେବୁ । ପୁଅକୁ ନେଇ-ଆସିବୁ । ଅବଧାନଙ୍କୁ କହିବୁ, ସେ ଉପରବେଳା ଆମ ଘରକୁ ଆସିବେ । ସମସ୍ତଙ୍କୁ କିଏ ଏତେ ବୁଝେଇବ ? ଶ୍ରେଷ୍ଠ ପିଲା ଦେଖି କିଏ ତାକୁ ମାରଧର କରିବ ବୋଲି କହୁଛୁ—ଆଉ ତାର ଉତ୍ତର କଣ ନା "ଚିରଦିନ କଣ ତୋ ପୁଅକୁ କାନିତଳେ ରଖିପାରିବୁ ?" ମୁଁ କଣ କରିପାରିବି କଣ କରିନପାରିବି ସେ କଥା ପାଇଁ ପରାମର୍ଶ ନେବାକୁ ଆସିନି ।" ଏହା କହି ହୁମ୍ ହୁମ୍ ହୋଇ ସେଠାରୁ ଚାଲିଗଲା ।

ଅନ୍ନପୂର୍ଣ୍ଣା ଅବାକ୍ ହୋଇ ଚାହିଁରହିଲା ।

କଦମ୍ବ କହିଲା—ମା ଆଉ ଠିଆ କାହିଁକି ହେଉଛ ? ହୁଏତ ସେ ପୁଣି ଫେରିଆସି ସଞ୍ଜା ତିଆରି ହେଉଛି କି ନାହିଁ ମତେ କହିବେ । ସେ ଯେଉଁ ଜିଦ୍ ଧରିଛନ୍ତି ଭଗବାନ ବି ତାହା କାଟିପାରିବେନି ।

×　　×　　×　　×

ସେଦିନ ସଞ୍ଝାରେ ଦେଢ଼ଶୁର ଅଫିମ ଖାଇ ଖଟ ଉପରେ ଶୋଇଥିଲେ । ଅନ୍ନପୂର୍ଣ୍ଣା ଘର ଭିତରକୁ ପଶି ଆସି କହିଲେ—ସାନବୋହୂ କ'ଣ କହୁଛନ୍ତି ଶୁଣ ।

ଦେଢ଼ଶୁର ସାନବୋହୂକୁ ଖୁବ୍ ଭଲପାଆନ୍ତି । ସାନବୋହୂ କଥା ଶୁଣି ଧଡ଼ପଡ଼ ହୋଇ ଖଟ ଉପରେ ବସିପଡ଼ି କହିଲେ—କ'ଣ କହୁ-ନାହାନ୍ତି !

ଅନ୍ନପୂର୍ଣ୍ଣା ସାନବୋହୂ ତରଫ ହୋଇ କହିଲେ—ସାନବୋହୂ କହୁଛି ଯେ ତା ପୁଅ ଆଖିରେ ଚାଟଶାଳୀରେ ପିଲାମାନେ କଲମ ମୁନ କାଲେ ଗେଞ୍ଜିଦେବେ, ସେଥି ଭୟରେ ତୁମେ ଆମ ଘରେ ଗୋଟିଏ ଚାଟଶାଳୀ ଖୋଲ ।

Digitized by srujanika@gmail.com

ଯାଦବ ଅଫିମ ନଳୀଟା ଫିଙ୍ଗିଦେଇ କହିଲେ—କଏ ସେ କଲମ ମୁନ ପୁଅ ଆଖିରେ ଗେଞ୍ଜିଲା ଦେଖି ।

ଅନ୍ନପୂର୍ଣ୍ଣା କହିଲେ—କେହି ଗେଞ୍ଜିନାହାନ୍ତି, କାଲେ କେତେବେଳେ କଏ ଗେଞ୍ଜିବ, ସେହି ଭୟରେ—

ଯାଦବ ଗ୍ରୁଡରେ ଛେପ ପକାଇ କହିଲେ—ମୁଁ ବୁଝିଲି ଯେ କଏ ଏବେ ଗେଞ୍ଜିଦେଲା ।

ବନ୍ଦୁ ଆଡ଼ୁଆଳରେ ଠିଆହୋଇ ଅନ୍ନପୂର୍ଣ୍ଣା କଥା ଶୁଣି ରାଗି ଉଠି କହିଲା—ନାନୀ, ତମେ ପରା ଏଇନେ କହୁଥିଲ ଯେ ଅନାସୃଷ୍ଟି କଥା ମୁହଁରେ ଧରିବନି ବୋଲି—ତେବେ ଏଇନେ କହିବାକୁ କଆଁ ଆସିଲ ?

ନିଜର କହିବା ଧରଣଟା ଯେ ଭୁଲ ହୋଇଗଲା, ଏକଥା ଅନ୍ନପୂର୍ଣ୍ଣା ଜାଣିପାରିଲା । ଏହି ଫଳାଫଳ ଭଲ ହେବନି । ବନ୍ଦୁର ରୁପାଗଲାର ଉତ୍ତର ସେ ଅନୁଭବ କରିପାରିଲା । ତେଣୁ ତାର ସବୁ ରାଗ ନିରୀହ ସ୍ୱାମୀଟି ଉପରେ ପଡ଼ିଲା । ସେ ସ୍ୱାମୀ ଉପରେ ଝଡ଼ିଙ୍କି ଉଠି କହିକି—ଅଫିମ ନିଶାରେ କ'ଣ ତମ କାନକୁ ଶୁଭୁନି ନା କଣ ? ମୁଁ କହିଲି କ'ଣ ଆଉ ତୁମେ ଶୁଣିଲ କ'ଣ ? ମୁଁ କ'ଣ କହିଲି ଯେ ଅମୂଲ୍ୟର ଆଖି କଏ କଣା କରିଦେଇଛି ! ମୋ କଥା ସମସ୍ତଙ୍କୁ ଯେମିତ ବିଷ ପରି ଜଣାପଡ଼ୁଛି ।

ଅନ୍ନପୂର୍ଣ୍ଣାର କଥାରେ ଯାଦବଙ୍କ ଅଫିମ ନିଶା କୁଆଡ଼େ ଉଭେଇଗଲା । ସେ କହିଲେ—କ'ଣ ହେଲାକ ?

ଅନ୍ନପୂର୍ଣ୍ଣା ରାଗିଯାଇ କହିଲେ—"ଯା ହୋଇଛି ଭଲ ହୋଇଛି । ଏମିତ ଲୋକ ସାଙ୍ଗରେ କଥାବାର୍ତ୍ତା କରିବା ଦୋଷ ।" ଏହା କହି ରାଗ ତମ ତମ ହୋଇ ସେଠାରୁ ଚାଲିଗଲେ ।

ଯାଦବ ଶାନ୍ତଭାବରେ ସାନବୋହୂକୁ କହିଲେ—ମା' କ'ଣ ହୋଇଛି କହିଲ ।

ବନ୍ଦୁ ଅନ୍ତରାଳରେ ରହି ଆସ୍ତେ ଆସ୍ତେ କହିଲା—ଆମ ଧାନଖଳା ନିକଟରେ ଗୁଟଶାଳୀ ଗୋଟିଏ ହେଲେ···

Digitized by srujanika@gmail.com

ଯାଦବ କହିଲେ—କାହିଁକି ହୋଇପାରିବନି ? ତେବେ ଏଠି ପଢ଼ାଇବ କିଏ ?

ବନ୍ଧୁ କହିଲା—ପଣ୍ଡିତ ମହାଶୟ ଆସିଥିଲେ । ତାଙ୍କୁ ଏ କଥା କହିଲି । ସେ କହିଲେ, ମାସକୁ ଦଶଟଙ୍କା ପାଇଲେ ସେ ତାଙ୍କର ଘଣ୍ଟଶାଳୀ ଏଠାକୁ ଉଠେଇଆଣିବେ । ମୁଁ କହୁଛି କଣ କି ସେ ଟଙ୍କା ମୋ ଜମା-ଟଙ୍କାର ସୁଧରୁ ଦେବି ।

ଯାଦବ ଖୁସି ହୋଇ କହିଲେ—ତେବେ ମୁଁ କାଲି ଲୋକ ଲଗେଇ-ଦେବି । ଗଙ୍ଗାରାମ ଏଠାକୁ ସ୍କୁଲ ଉଠେଇଆଣିଲେ ଖୁବ୍ ଭଲ କଥା ହେବ ।

ଦେଢ଼ଶୁରଙ୍କ କଥା ଶୁଣି ବନ୍ଧୁର ରାଗ ଥମିଗଲା । ସେ ହସି ହସି ଫେରେଇ ଘରେ ପ୍ରବେଶ କରୁ କରୁ ଦେଖିଲା, ଅନ୍ନପୂର୍ଣ୍ଣା ଧାନଉଞ୍ଚୁଆଁ ହାଣ୍ଡି ପରି ମୁହଁ କରି ବସିଛନ୍ତି ଓ ପାଖରେ ବସି କଦମ୍ବ କଣ ଚୁପ୍ ଚୁପ କହୁଛି । ବନ୍ଧୁକୁ ଦେଖି ତାର ମୁହଁ କଳାକାଠ ପଡ଼ିଗଲା । ସେ କହିପକାଇଲା ଏ ମା ହେଇ ତ—

ବନ୍ଧୁ ବୁଝିଲା ତା କଥା ପଡ଼ିଥିଲା । ଆଗକୁ ଯାଇ କହିଲା—ଏ ମା କଣ ? କଣ ଏ ମା ?

ଡରରେ କଦମ୍ବ ଢୋକ ଗିଳି କହିଲା—ନାମା କଥା କଣ କି— ବଡ଼ ମା କହିଲେ, ଏହି ଧର—

ବନ୍ଧୁ ରୁକ୍ଷ କଣ୍ଠରେ କହିଲା—ଯା ଏଠୁ । ତୋ କାମ କରିବୁ ଯା ।

କିଛି ନକହି କଦମ୍ବ ଚାଲିଗଲା । ବନ୍ଧୁ ଅନ୍ନପୂର୍ଣ୍ଣାଙ୍କୁ ଦେଖେଇ କହିଲା—ଯା'ହେଉ ତୁମର ପରାମର୍ଶଦାତାମାନେ ଖୁବ୍ ଭଲ ପରାମର୍ଶ ଦେଉଛନ୍ତି । ଦେଢ଼ଶୁରଙ୍କୁ କହି ସେମାନଙ୍କର ଦରମା ବଢ଼ାଇଦେବା ଉଚିତ ।

ଅନ୍ନପୂର୍ଣ୍ଣା ରାଗିଯାଇ କହିଲା—ଯାଉନୁ କହିବୁ । ତୋର ଦେଢ଼ଶୁର ମୋ ମୁଣ୍ଡ କାଟିପକାଇବେ । ଦେଢ଼ଶୁର ବି ସେମିତି । ଶୁଣୁ ଶୁଣୁ କହିବେ— କଣ ମା ? କଣ କହୁଚ ? ଠିକ୍ କହୁଚ ତ । ଅନେକଙ୍କୁ ଦେଖିଚ, ହେଲେ

Digitized by srujanika@gmail.com

ତୋ ଭଳି କାହାକୁ ଦେଖିନି । କି ବେଳା ନେଇ ଜନ୍ମ ହୋଇଥିଲୁ କେଜାଣି, ଘରଗୋଟାକର ଲୋକେ ତଣମରି ତୋତେ ରହୁଛନ୍ତି ।

ବନ୍ଦୁ ରାଗିଯାଇଥିଲେ ବି ଅନ୍ନପୂର୍ଣ୍ଣା କହିବା ଭଙ୍ଗୀରେ ସେ ହସି-ପକାଇଲା । କହିଲା – କାହିଁ ତମେ ତ ତ୍‌ନ ?

ଅନ୍ନପୂର୍ଣ୍ଣା କହିଲେ – ତଟ୍‌ନ ? ତୋ ରଣଚଣ୍ଡୀ ମୂର୍ତ୍ତି ଦେଖି ଯା'ର ରକ୍ତ ପାଣି ହେବନି ସେ ଏବେ ମା ପେଟ ଭିତରେ ଅଛି । ନହେଲେ ତୋତେ କିଏ ନଡରିବ ଯେ ? କନ୍ଧୁ ଏତେ ରାଗ ଭଲ ନୁହେଁ । ପୁଅଝିଅ ହୋଇଥିଲେ ଝିଅ ପାଞ୍ଚଟିର ମା ହୋଇସାରନ୍ତିଣି । ଏମିତି ପିଲାଳିଆ ଗୁଣ କାହିଁକି ? ତୋତେ ଦୋଷ ଦେଇ ବା ଲାଭ କଣ ? ତୋ ଦେଢ଼ଶୁର ବୁଢ଼ାଟା ଗେହ୍ଲା, ଆଦର କରି ତୋତେ ଏପରି ଉପରମୁହାଁ କରିଦେଇଛି ।

ବନ୍ଦୁ କହିଲା—ଭାଗ୍ୟ ନେଇ ଯେ ଜନ୍ମ ହୋଇଛି, ସେ କଥା ମାନୁଛି । ଧନ ଦଉଲତ ଅନେକ ପାଇଥାନ୍ତି, ହେଲେ ଏଭଳି ଦେବପ୍ରତିମ ଦେଢ଼ଶୁର ପାଇବା ଅନେକ ତପସ୍ୟାର ଫଳ । ମୋ ଭାଗ୍ୟରେ ତ ଅଛି— ତୁମେ ହିଂସା କରି କଣ କରିବ ? ସେ ଗେହ୍ଲାକରି ମୋ ମୁଣ୍ଡ ଖାଇନାହାନ୍ତି ଯେ ତମେ ଖାଇଛ ।

ଅନ୍ନପୂର୍ଣ୍ଣା କହିଲା—କଣ ମୁଁ ତୋ ମୁଣ୍ଡ ଖାଇଛି ? ସେ କଥା କହିବାକୁ କାହାର ସାହସ ନାହିଁ । ମୋର ଭାରି କଡ଼ା ଶାସନ । ହେଲେ କଣ ହେବ, ମୋତେ କେହି ଭୟ କରନ୍ତି ନାହିଁ । ସ୍ୱକର ସ୍ୱକରାଣୀ ବି ମୋ ସାଙ୍ଗରେ ଝଗଡ଼ା କରନ୍ତି । ସତେ ଯେପରି ସେମାନେ ମୁନିବ, ଆଉ ମୁଁ ଦାସୀ । ମୁଁ ସବୁ ସହିଯାଉଛି । ଆଉ କେହି ହୋଇଥିଲେ—

ଅନ୍ନପୂର୍ଣ୍ଣାର ଏପରି ଓଲଟ ପାଲଟ କଥା ଶୁଣି ବନ୍ଦୁ ଜୋର୍‌ରେ ହସି ଘର ଫଟେଇଲା । ସେ କହିଲା—“ଅପା, ତୁମେ ସତ୍ୟଯୁଗର ଲୋକ । କେମିତି ତୁମେ ଏ କଳିଯୁଗରେ ଜନ୍ମ ହେଲ କେଜାଣି । କାହିଁ ମୋ ସାଙ୍ଗରେ ତ କେହି କଳି କରୁନାହାନ୍ତି ତ ?” ଏହା କହି ସେ ଅନ୍ନପୂର୍ଣ୍ଣା ପାଖକୁ ଆସି ତା' ବେକରେ ଦୁଇ ହାତ ଛନ୍ଦି କହିଲା—ଅପା, ଗୋଟିଏ ଗପ କହିଲ ।

Digitized by srujanika@gmail.com

ଅନ୍ନପୂର୍ଣ୍ଣା ଘରିଯାଇ କହିଲ—ଯା', ପାଟିରୁ ଉଠ୍ ।

କଦମ୍ବ ଦୌଡ଼ିଆସି କହିଲା—ମା' ଅମୂଲ୍ୟ ଗୁଆକାଟିରେ ହାତ କାଟି କାନ୍ଦୁଛି ।

ବନ୍ଦୁ ଚମକିପଡ଼ି କହିଲା—ସେ ଗୁଆକାଟି କୋଉଠୁ ପାଇଲା ? ତମେ ସବୁ କ'ଣ କରୁଥିଲ ?

—ମୁଁ ଆର ଘରେ ବିଛଣା ପକାଉଥିଲି । ଜାଣିନି ସେ କେତେବେଳେ ବଡ଼ମା'ଙ୍କ ଘରେ ପଶି—

"ଭଲ ହେଇଛି"—କହି ଦୌଡ଼ି ଚାଲିଗଲା । କିଛି ସମୟ ପରେ ଅମୂଲ୍ୟର ଆଙ୍ଗୁଠିରେ ପଟି ବାନ୍ଧି କୋଳରେ ଧରି ଆସି କହିଲା—ଅପା, ତୁମକୁ କେତେଥର କହିଲିଣି, ଛୁଆପିଲା ଘରେ କୁଟିକାଟି ହେଉଛି ଟିକେ ସାବଧାନରେ ରଖିବାକୁ—ହେଲେ—

ଅନ୍ନପୂର୍ଣ୍ଣା ଆହୁରି ରାଗିଯାଇ କହିଲେ—ତୁ ଯେ କି କଥା କହୁ ତାର ଆଗ ପଛ କିଛି ଅଛି ? ପୁଅ କେତେବେଳେ ଘରେ ପଶି ଗୁଆକାଟିରେ ହାତ କାଟିବ ବୋଲି କ'ଣ ତାକୁ ଲୁହା ସିନ୍ଦୁକରେ ରଖିବି ନା କ'ଣ କରୁଛୁ ?

ବନ୍ଦୁ ରାଗିଯାଇ କହିଲା—କାଲିଠୁ ତାକୁ ଘରେ ବାନ୍ଧି କରି ରଖିବାକୁ ହେବ । ଏହା କହି ସେ ସେଠୁ ଚାଲିଗଲା ।

ଅନ୍ନପୂର୍ଣ୍ଣା କହିଲେ—ଶୁଣିଲୁ ତ କଦମ୍ବ ତା କଥାଗୁଡ଼ାକ । ଗୁଆକାଟି କ'ଣ ଲୁହା ସିନ୍ଦୁକରେ ପୂରେଇ ରଖିବି ନା କ'ଣ ?

କଦମ୍ବ କ'ଣ କହିବାକୁ ଯାଉଥିଲା—ବନ୍ଦୁ ଫେରି ଅସି କହିଲା—"ସତ କହୁଛି ଅପା, ତୁମେ ଯଦି ଚାକର ଚାକରାଣୀଙ୍କୁ ଏମିତି ସାକ୍ଷୀ ରଖି କଥା କହିବ ତେବେ ମୁଁ ପୁଅକୁ ଧରି ବାପଘରକୁ ଚାଲିଯିବି ।"

ଅନ୍ନପୂର୍ଣ୍ଣା କହିଲେ—ଯାଉନୁ, କିଏ ମନାକରୁଛି ? କାଲି ମୁଣ୍ଡ ପିଟି ମଲେ ବି ଆଉ ଆଣିବାର ନାଆଁ ମୁଁ ଧରିବିନି—ସେ କଥା ମନେରଖିଥିବୁ ।

"ମୁଁ ଆସିବାକୁ ଚାହୁଁନି"—କହି ମୁହଁ ଫୁଲେଇ ବନ୍ଦୁ ସେଠୁ ଚାଲିଗଲା । ପ୍ରାୟ ଦୁଇଘଣ୍ଟା ପରେ ଅନ୍ନପୂର୍ଣ୍ଣା ବନ୍ଦୁର ଘର ଭିତରକୁ ଯାଇ

Digitized by srujanika@gmail.com

ଦେଖିଲେ ମାଧବ ମୋକଦ୍ଦମାର କାଗଜପତ୍ର ଦେଖିବାରେ ବ୍ୟସ୍ତ । ବନ୍ଦୁ ଅମୂଲ୍ୟକୁ ଖଟ ଉପରେ ଶୁଆଇ ଗପ କହୁଛି । ଅନ୍ନପୂର୍ଣ୍ଣା କହିଲେ—ଖାଇବୁ ଆସୁନୁ ।

ବନ୍ଦୁ କହିଲା—ମୋର ଭୋକ ନାହିଁ ।

ଅମୂଲ୍ୟ ବୁଡ଼ୀର ବେକରେ ହାତ ଛନ୍ଦି କହିଲା—ସାନ ମା ଖାଇବେନି —ତୁମେ ଯାଅ ।

ଅନ୍ନପୂର୍ଣ୍ଣା ଅମୂଲ୍ୟକୁ ଧମକ ଦେଇ କହିଲା—ତୁ ଚୁପ୍‌କର । ଏଇ ପିଲାଟି ସବୁ ଅନର୍ଥର ମୂଳ । ପୁଅକୁ ଯେମିତି ଗେହ୍ଲା କରୁଛୁ ଶେଷରେ ସବୁ ଜାଣିବୁ । ସେତେବେଳେ କାନ୍ଦୁଥିବୁ ଓ ମୋ କଥା ମନେ-ପକାଉଥିବୁ ।

ବନ୍ଦୁ ଚୁପ୍ ଚୁପ୍ ଅମୂଲ୍ୟକୁ ଶିଖାଇଦେଲା । ଅମୂଲ୍ୟ ପାଟିକରି କହିଲା—ତୁମେ ଏଠୁ ଯାଅ ତ । ସାନମା ମୋତେ ଗପ କହିବେ ।

ଅନ୍ନପୂର୍ଣ୍ଣା ପୁଣି ଧମକେଇ କହିଲେ—ଭଲ ଚାହୁଁ ତ ଖାଇବାକୁ ଆ । ନହେଲେ କାଲି ସକାଳୁ ତମ ଦୁ'ଜଣକୁ ଏଠୁ ଯଦି ବିଦା ନକରିଛି ତେବେ ମୋ ନାଆଁ ନାହିଁ । ଏହା କହି ସେଠାରୁ ଦୁମ୍ ଦୁମ୍ ହୋଇ ବାହାରିଗଲେ ।

ମାଧବ କହିଲା—ଆଜି ପୁଣି କଣ ହେଲା ?

ବନ୍ଦୁ କହିଲା—ଅପା ରାଗିଲେ ଯାହା ହୁଏ ସେଇଆ ହେଲା । କଥା କଣ କି—ମୁଁ ଅପାଙ୍କୁ କହିଲି, ଛୁଆପିଲା ଘର—ଛୁରୀ କାତି ହେଣକା ଟିକେ ସାବଧାନରେ ରଖ । ଏଇ ହେଲା ଦୋଷ । ସେଥିପାଇଁ ଏତେ କାଣ୍ଡ ।

ମାଧବ କହିଲା—କିଛି ପାଟିତୁଣ୍ଡ ନକରି ଖାଇବାକୁ ଯାଅ । ନହେଲେ ଭାଉଜ ଯେମିତି ଦୁମ୍ ଦୁମ୍ ହୋଇ ଘରୁ ବାହାରିଗଲେ, ସେଥିରୁ ଜଣାପଡ଼ୁଛି ଭାଇ ଏବେ ଆସିବେ ।

ବନ୍ଦୁ ଅମୂଲ୍ୟକୁ କୋଳରେ ଧରି ରୋଷେଇ ଘରକୁ ଚାଲିଗଲା ।

Digitized by srujanika@gmail.com

# ତିନି

ଗୋଟିଏ ମାଆର ଦୁଇଟି ପୁଅ ମାଆକୁ ଯେପରି ଆଶ୍ରା କରି ରହିଥାନ୍ତି, ସେମିତି ଦୁଇ ମାଆ ଗୋଟିଏ ପୁଅକୁ ଆଶ୍ରୟ କରି ଛଅବର୍ଷ କଟାଇଦେଲେ । ବର୍ତ୍ତମାନ ଅମୂଲ୍ୟ ବଡ଼ ହୋଇ ଏଣ୍ଟ୍ରାନ୍‌ସର ଦ୍ୱିତୀୟ ଶ୍ରେଣୀରେ ପଢ଼ୁଛି । ତା' ପଢ଼ା ପାଇଁ ଘରୋଇ ମାଷ୍ଟର ନିଯୁକ୍ତ ହୋଇଛନ୍ତି । ଘରୋଇ ମାଷ୍ଟର ପଢ଼ାଇଦେଇ ଗଲା ପରେ ଅମୂଲ୍ୟ ଖେଳିବାକୁ ବାହାରିଥିଲା ।

ଘରେ ପଶୁ ପଶୁ ଅନ୍ନପୂର୍ଣ୍ଣା କହିଲେ—କଣ କରୁଛୁ କହିଲୁ ସାନବୋହୂ ?

ଆଲମାରିରୁ ସବୁ ଲୁଗାପଟା କାଢ଼ିଆଣି ଚଟାଣ ଉପରେ ଥୋଇ ବିନ୍ଦୁ ଅମୂଲ୍ୟର ପୋଷାକ ବାଛୁଥିଲା । ଅମୂଲ୍ୟ ତା' କକା ସହିତ କେଉଁ ମହିକିଲ ଘରକୁ ଭୋଜି ଖାଇବାକୁ ଯିବ । ସେଥିପାଇଁ ତା ଜାମା ପ୍ୟାଣ୍ଟ ବାହାରିକରୁଛି ।

ଆଜି ବିନ୍ଦୁର ମନଟା ଭଲ ନଥିଲା । ଅନ୍ନପୂର୍ଣ୍ଣା ବିଭିନ୍ନ ରକମର ଏତେଗୁଡ଼ାଏ ପୋଷାକପତ୍ର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲେ— ଏ କଣ ସବୁ ଅମୂଲ୍ୟର ପୋଷାକ ?

—ହିଁ ।

ଅନ୍ନପୂର୍ଣ୍ଣା କହିଲେ—ତୁ କେତେ ଟଙ୍କା ଯେ ଅପବ୍ୟୟ କରୁଛୁ କହିଲୁ ? ଅମୂଲ୍ୟର ହେଲେ ପୋଷାକର ଦାମ୍‌ରେ ଗୋଟିଏ ଗରିବ ଘର ପିଲାର ଗୋଟିଏ ବର୍ଷର ପୋଷାକ ତିଆରି ହୋଇପାରନ୍ତା !

ବିନ୍ଦୁ ବିରକ୍ତ ହେଲେ ବି ସହଜଭାବରେ କହିଲା—ତା' ତ ହୋଇପାରେ । କିନ୍ତୁ ଧନୀ ଗରିବ ଭିତରେ ତ ପୁଣି ତଫାତ୍ ଅଛି । ସେଥିପାଇଁ ଦୁଃଖ କରି କି ଲାଭ ?

ଅନ୍ନପୂର୍ଣ୍ଣା କହିଲେ—ବଡ଼ଲୋକ ହେଲେ ବି ସବୁ କାମରେ ତୋର ଅତି ମାତାଟା ଅଛି ।

Digitized by srujanika@gmail.com

ବନ୍ଧୁ କହିଲା—କଣ କହୁଥିଲ ପରା—କହୁନ । ମୋର ଏବେ ସମୟ ନାହିଁ ।

"ତୋର କେତେବେଳେ ସମୟ ଥାଏ ଯେ"—କହି ରାଗିକରି ଘରୁ ବାହାରି ଚାଲିଗଲେ ଅନ୍ନପୂର୍ଣ୍ଣା ।

ଭୈରବ ଅମୂଲ୍ୟକୁ ଖୋଜିବାକୁ ଯାଇଥିଲା । ପ୍ରାୟ ଘଣ୍ଟାକ ପରେ ତାକୁ ଖୋଜି ଖୋଜି ଆଣିଲା ।

"କେଉଁଠି ଥିଲୁକିରେ ଅମୂଲ୍ୟ ?"—ବନ୍ଧୁ ପଚାରିଲା ।

ଅମୂଲ୍ୟ କିଛି ନକହି ମୁହଁ ପୋତି ତଳକୁ ଚାହିଁ ରହିଲା ।

ଭୈରବ କହିଲା—ଆଉ ପଡ଼ା ଟୋକାଙ୍କ ସାଙ୍ଗରେ ଡାବଲପୁଅ ଖେଳୁଥିଲା ।

ଏହି ଡାବଲପୁଅ ଖେଳକୁ ବନ୍ଧୁର ଭାରି ଭୟ । ସେ ଖେଳ ନ ଖେଳିବାକୁ ଅମୂଲ୍ୟକୁ ସେ ବାରମ୍ବାର ମନା କରିଥିଲା । ତେଣୁ ସେ କହିଲା—ଆରେ ଅମୂଲ୍ୟ, ଡାବଲପୁଅ ନଖେଳିବାକୁ ତୋତେ ପରା ମନାକରିଥିଲି ।

ଅମୂଲ୍ୟ ଭୟଭୀତ ହୋଇ କହିଲା—ମୁଁ ଖେଳ ଦେଖୁଥିଲି, ସେମାନେ ମୋତେ ଜବରଦସ୍ତ ଖେଳିବାକୁ ଟାଣି ନେଇଗଲେ ।

"ଜବରଦସ୍ତ ନେଇଗଲେ ? ହଉ ଏବେ ତୁ ଯାଅ । ପଛେ ସେ କଥା ବିଚାର ହେବ ।" ଏହା କହି ସେ ଅମୂଲ୍ୟକୁ ଶାର୍ଟ ପ୍ୟାଣ୍ଟ ପିନ୍ଧାଇଦେଲା ।

ପ୍ରାୟ ଦୁଇ ମାସ ହେବ ଅମୂଲ୍ୟର ବ୍ରତୋପନୟନ ହୋଇଥିଲା—ସେଥିପାଇଁ ତା ମୁଣ୍ଡ ଲଣ୍ଡା ହୋଇଥିଲା । ସେ ଲଣ୍ଡା ମୁଣ୍ଡରେ ଜରିଟୋପି ପିନ୍ଧିବାକୁ ମନାକଲା । କିନ୍ତୁ ବନ୍ଧୁ ଶୁଣିବା ଲୋକ ନୁହେଁ । ଜୋର୍ କରି ଟୋପି ପିନ୍ଧାଇଦେବାରୁ ଅମୂଲ୍ୟ କାନ୍ଦିଲା । ମାଧବ ଘର ଭିତରକୁ ପଶୁ ପଶୁ କହିଲେ—ଆଉ କେତେ ଡେରି ହେବ ?

କିନ୍ତୁ ଅମୂଲ୍ୟର ବେଶ ପୋଷାକ ଦେଖି ହସିଦେଇ କହିଲେ—ବାଃ, ଏଇ ତ ମଥୁରାର କୃଷ୍ଣ ରଜା ବେଶ ହୋଇଛନ୍ତି ।

Digitized by srujanika@gmail.com

ଲଜରେ ଅମୂଲ୍ୟ ଟୋପି ଫିଙ୍ଗିଦେଇ ଖଟ ଉପରେ ମୁହଁ ମାଡ଼ି ଶୋଇପଡ଼ିଲା ।

ବନ୍ଦୁ ରାଗିଯାଇ କହିଲା—ଦେଖୁଛ ପିଲାଟା କାନ୍ଦୁଛି, ତା' ଉପରେ ତୁମେ ପୁଣି—

ମାଧବ ଗମ୍ଭୀର ହୋଇ କହିଲେ—ବାପା ଅମୂଲ୍ୟ କାନ୍ଦନା । ଆ, ଯିବା । ଲୋକେ ପାଗଲ କହିଲେ ମୋତେ କହିବେ ।

ଏମିତିକା ଘଟଣା ଆଉ ଥରେ ହୋଇଥିଲା । ତେଣୁ ସେଇ କଥା ଆଜି ପୁଣି ପୁନରାବୃତ୍ତି ହେବାରୁ ବନ୍ଦୁ ରାଗରେ ଜଳିଉଠି କହିଲା—"ତା' ହେଲେ ମୁଁ ପାଗଳଙ୍କ ଭଳି କାମ କରେ ନା ? ହଉ ତେବେ ! ଏହା କହି ଅମୂଲ୍ୟକୁ ହାତ ପଞ୍ଝାରେ ଦୁଇ ଚାରି ପାହାର ପିଟି ତାର ଦାମି ମଖମଲ ପୋଷାକ ଖୋଲିପକାଇଲା ।

ମାଧବ ଭୟରେ ଘରୁ ବାହାରିଯାଇ ଅନ୍ନପୂର୍ଣ୍ଣାଙ୍କୁ କହିଲେ—ଶୁଣ, ତା' ମୁଣ୍ଡକୁ ଭୂତ ଚଢ଼ିଛି । ତା ପାଖକୁ ଟିକେ ଯାଅ ।

ଅନ୍ନପୂର୍ଣ୍ଣା ଆସି ଦେଖିଲେ ବନ୍ଦୁ ଅମୂଲ୍ୟର ଦାମି ପୋଷାକ ଓହ୍ଲାଇ ପକାଇଛି ଓ ସାଇତାଇ ପୋଷାକ ପିନ୍ଧାଇଦେଇଛି । ଅନ୍ନପୂର୍ଣ୍ଣା କହିଲେ—ଭଲ ପୋଷାକ ତ ପିନ୍ଧେଇ ଦେଇଥିଲୁ—ଏବେ ଖୋଲିପକାଇଲୁ କାହିଁକି ?

ବନ୍ଦୁ ହାତଯୋଡ଼ି କହିଲା—ତମ ଗୋଡ଼ତଳେ ପଡ଼ୁଚି ଅପା—ତମେ ଏଠୁ ଗଲ । ତମ ପାଞ୍ଚଜଣଙ୍କ ପରାମର୍ଶ ଜ୍ୱାଳାରେ ତା' ଜୀବନଟା ନଷ୍ଟ ହୋଇଯିବ ।

ଅନ୍ନପୂର୍ଣ୍ଣା କିଛି ନକହି ଠିଆହେଲେ । ବନ୍ଦୁ ଅମୂଲ୍ୟର କାନ ଧରି ଟାଣିଆଣି ଘରର ଗୋଟିଏ କଣରେ ଠିଆକରି କହିଲା—"ତୁ ଯେମିତିକା ଦୁଷ୍ଟପିଲା ସେଥିପାଇଁ ସେମିତିକା ଶାସ୍ତି ଭୋଗିବୁ । ତମେ ଚାଲିଲ ଅପା, ମୁଁ ତାକୁ ଆଜି ଘରେ ପୂରାଇ ଶିକୁଳି ଦେବ ।" ଏହା କହି କବାଟ ଦେଇଦେଲା ।

Digitized by srujanika@gmail.com

ସେତେବେଳକୁ ଦିନ ଗୋଟାଏ ବାଜିଥାଏ । ଅନ୍ନପୂର୍ଣ୍ଣା ଆଉ ସମ୍ଭାଳି ପାରିଲେ ନାହିଁ । ସେ କହିଲେ—ସତରେ କ'ଣ ପୁଅକୁ ଆଜି ଖାଇବାକୁ ଦେବୁନାହିଁ ନା କଣ ? ତା ଲାଗି କଣ ଆଜି ଘରଗୋଟାକର ଲୋକେ ଉପାସ ରହିବେ ?

ବିନ୍ଦୁ କହିଲା—ଘରଲୋକଙ୍କର ଯାହା ଇଚ୍ଛା ।

ଅନ୍ନପୂର୍ଣ୍ଣା କହିଲେ—କି କଥା କହୁଛୁ ? ଆମ ଦୁଇଜଣଙ୍କର ସେ ଗୋଟିଏ ବୋଲି ପୁଅ । ସେ ଉପାସ ରହିଲେ, ଆମେ ଅବା କଣ, ଚାକର-ବାକର ବି କଣ ଖାଇପାରିବେ ?

ବିନ୍ଦୁ କହିଲା—ସେ କଥା ମୁଁ ଜାଣେନା ।

ଅନ୍ନପୂର୍ଣ୍ଣା ଦେଖିଲେ ତର୍କ କରି ଲାଭ ନାହିଁ । ସେ କହିଲେ—ବିନ୍ଦୁ, ବଡ଼ ହିସାବରେ ମୋ କଥା ମାନ । ଆଜି ତାକୁ ଛାଡ଼ିଦେ । ତା'ଛଡ଼ା ଉପବାସ ରହିଲେ ଅମୂଲ୍ୟର ପିତ୍ତ ଚଢ଼ିବ । ଫଳରେ ତା ପାଇଁ ତୋତେ ହିଁ ଭୋଗିବାକୁ ହେବ ।

ସେତେବେଳକୁ ବେଳ ବି ଗଡ଼ିଆସୁଥିଲା । ତେଣୁ ସେ ଟିକିଏ ଦବିଯାଇ କହିଲା—କଦମ୍ବ ଯା ତ ତାକୁ ନେଇଆସିବୁ । ଆଉ ତୁମକୁ ମଧ୍ୟ କହିରଖୁଛି ଅପା, ଭବିଷ୍ୟତରେ ମୋ କଥାରେ କଥା କହିଲେ ଭଲହେବନି କହିଦେଉଛି ।

ସେଦିନ ପରି ଆଜି ବି ପାଟିତୁଣ୍ଡ କମିଗଲା ।

ସାନ ଭାଇର ଓକିଲାତି ଚାକିରୀରେ ଉନ୍ନତି ହେବାର ଦେଖି ଯାଦବ ଚାକିରୀ ଛାଡ଼ିଦେଇ ନିଜ ସମ୍ପତ୍ତିବାଡ଼ିର ଦେଖାଶୁଣା କଲେ । ସାନ ବୋହୂ ହାତରେ ଯେଉଁ ଦଶ ହଜାର ଟଙ୍କା ଥିଲା ତାକୁ ସୁଧ ଲଗାଇ ଦିଗୁଣ ବି କରିଦେଲେ । ବର୍ତ୍ତମାନ ମାଧବର ରୋଜଗାର ପଇସା ଓ ସୁଧ ଟଙ୍କାରୁ କିଛି ନେଇ ଯାଦବ ଗାଁଠାରୁ ପ୍ରାୟ ପାଏ ବାଟରେ ଗୋଟିଏ ବଡ଼ ଘର ତୋଳୁଥିଲେ, ଏବେ ପ୍ରାୟ ଦଶଦିନ ହେଲା ଘର କାମ ସରିଲା । ପ୍ରସ୍ତାବ ଥିଲା ଦୁର୍ଗାପୂଜା ପରେ ଭଲଦିନ ଦେଖି ସମସ୍ତେ ସେ ଘରକୁ ଚାଲିଯିବେ । ତେଣୁ ଦିନେ ଯାଦବ ଖାଇ ବସିଥିଲାବେଳେ ସାନ ବୋହୂକୁ ଉଦ୍ଦେଶ୍ୟ

Digitized by srujanika@gmail.com

କରି କହିଲେ ମା ତୁମ ଘରତ ତିଆରିହେଲା, ଦିନେ ଯାଇ ଦେଖିଆସ; ଆଉ କଣ କିଛି ବାକି ରହିଲା କି କଣ ।

ବିନ୍ଦୁର ଗୋଟିଏ ଅଭ୍ୟାସ ଥିଲା—ତାର ହଜାରେ କାମ ଥିଲେ ବି ଦେଢ଼ଶୁର ଖାଇବସିଥିଲେ ସେ କବାଟ କଣରେ ବସିରହି ଦେଢ଼ଶୁରଙ୍କ କଥା ଶୁଣେ । ଦେଢ଼ଶୁରଙ୍କୁ ସେ ଭାରି ଭକ୍ତି କରେ । ସେ କହିଲା—ନା, ଆଉ କିଛି ବାକିନାହିଁ ।

ଯାଦବ ହସିଦେଇ କହିଲେ—ନ ଦେଖୁଣୁ ଭଲ ବୋଲି ସୁପାରିଶ କରିଦେଲ ! ହଉ ଭଲ କଥା । ତେବେ ମୋର ମନହେଉଛି ଭଲ ଦିନଟିଏ ଦେଖି ବନ୍ଧୁବାନ୍ଧବ ଡାକିବା । ସେହିଦିନ ନୂଆ ଘରକୁ ଉଠିଯିବା । କଣ କହୁଚ ?

ବିନ୍ଦୁ ଧୀରେ ଧୀରେ କହିଲା—ଅପାଙ୍କୁ ପଚାରିବ, ସେ ଯାହା କହିବେ ସେଇଆ ହେବ ।

ଯାଦବ କହିଲେ—ସେ କଥା କେମିତି ହେବ ? ତମେ ମୋ ଘରର ଲକ୍ଷ୍ମୀ । ତମେ ଯାହା କହିବ ସେଇଆ ହେବ ।

ଅନ୍ନପୂର୍ଣ୍ଣା ନିକଟରେ ଥିଲେ । ସେ ହସିଦେଇ କହିଲେ—ମା ତୁମର ଟିକିଏ ଶାନ୍ତ ହେଲେ ସିନା !

ଯାଦବ କହିଲେ—ଶାନ୍ତ କଣ ? ସେ ପରା ଜଗଦ୍ଧାତ୍ରୀ—ବର ଦିଅନ୍ତି, ଆଉ ଦରକାର ହେଲେ ଖଣ୍ଡା ଖର୍ପର ମଧ ଧାରଣ କରନ୍ତି । ମା ଆସିବା ଦିନଠୁ ଆମ ଘରେ ଟିକିଏ ହେଲେ ଦୁଃଖ ନାହିଁ ।

ଅନ୍ନପୂର୍ଣ୍ଣା କହିଲେ—ସତ କଥା ଯେ—ହେଲେ ସେ ଆସିବା ଆଗର ଦିନ କଥାଗୁଡ଼ାକ ଟିକେ ଭାବିଲେ ମନରେ ଭୟ ଆସେ ।

ବିନ୍ଦୁ ଲଜ୍ଜିତ ହୋଇ କଥା ବଦଳାଇ କହିଲା—ଆପଣ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ ଦିଅନ୍ତୁ । ସେ ଘରଟା ବଡ଼ । ରହିଲେ କିଛି ଅସୁବିଧା ହେବନି । ଇଚ୍ଛା କଲେ ଦୁଇମାସ ବି ରହିପାରିବେ ।

ଯାଦବ କହିଲେ—ସେଇଆ ହେବ । କାଲି ସମସ୍ତଙ୍କୁ ନିମନ୍ତ୍ରଣପତ୍ର ପଠାଇଦେବି ।

Digitized by srujanika@gmail.com

# ଗ୍ରେସ

ସେମାନଙ୍କ ପିଉସୀଝିଅ ଭଉଣୀ ଏଲୋକେଶୀର ଅବସ୍ଥା ଭଲ ନଥିଲା । ତେଣୁ ଯାଦବ ତାକୁ ଆର୍ଥିକ ସାହାଯ୍ୟ କରନ୍ତି । ନିଜ ପୁଅକୁ ଯାଦବଙ୍କ ଘରେ ରହି ପଢ଼ାଇବାକୁ ସେ ଚିଠି ଲେଖିଥିଲା । କିନ୍ତୁ ସେ ପୁଅକୁ ଧରି ଆପେ ତାଙ୍କ ଘରେ ପହଞ୍ଚିଲେ । ଦ'ଦିନ ପରେ ବି ଏଲୋକେଶୀର ସ୍ୱାମୀ ଆପେ ପହଞ୍ଚିଲେ । ଏଲୋକେଶୀର ପୁଅ ନରେନ—ବୟସ ଷୋହଳ କି ସତର ହେବ । ସେ ଚଉଡ଼ାଧଡ଼ିଥିବା ଲୁଗା ଫେର କରି ପିନ୍ଧେ ଓ ଦିନକୁ ଆଠ ଦଶଥର ମୁଣ୍ଡ କୁଣ୍ଡାଇ କେଶ ସଜେ । ତା ବାଳକୁଣ୍ଡା ଦେଖିବାର କଥା । ଏଲୋକେଶୀ ତା ପୁଅର ରୂପ ଗୁଣ କଥା ସମସ୍ତଙ୍କୁ କହୁଥାଏ ।

ବିନ୍ଦୁ କହିଲା—ବାବୁ, କେଉଁ ଶ୍ରେଣୀରେ ପଢ଼ୁଛ ?

ନରେନ କହିଲା—ଚତୁର୍ଥ ଶ୍ରେଣୀରେ ପଢ଼ୁଛି । ଆଉ ମୋ ବହି ସବୁ କଣ ଜାଣ ? ରୟେଲ ରିଡ଼ର ଗ୍ରାମାର, ଜୋଗ୍ରାଫୀ, ଏରିଥମେଟିକ୍, ଡେସିମାଲ୍ ଫ୍ରେସିମାଲ ଆଉ ଯେ କେତେ କଣ ସେ ସବୁ ତୁମେ ବୁଝିପାରିବନି ମାଉଁ ।

ଏଲୋକେଶୀ ପୁଅକୁ ଗର୍ବରେ ଚାହିଁଦେଇ ବିନ୍ଦୁକୁ କହିଲା—ସେ କଣ ଖଣ୍ଡେ ଦ' ଖଣ୍ଡ ବହି ? ବହିର ପାହାଡ଼ । କାଲି ଟ୍ରଙ୍କରୁ ବହିପତ୍ର ବାହାର କରି ତୋ ମାଉଁକୁ ଦେଖାଇଦେବୁ ତ ବାବା ।

ନରେନ୍ କହିଲା—ହଉ ଦେଖାଇଦେବ ।

ବିନ୍ଦୁ କହିଲା—ମାଟ୍ରିକ୍ ପାସ୍ କରିବାକୁ ଡେରି ଅଛି ତ ?

ଏଲୋକେଶୀ କହିଲା—ଡେରି କାହିଁକି ହୋଇଥାଆନ୍ତା ? ଏତେ-ବେଳକୁ ସେ ମାଟ୍ରିକ୍ ପାଶ୍ କରିସାରନ୍ତାଣି । ଖାଲି ସେ ପୋଡ଼ା ମାଷ୍ଟର-ଗୁଡ଼ାକ ପାଇଁ ହେଉନି । ସେମାନଙ୍କର ସର୍ବନାଶ ହେଉ । ସେମାନେ ମୋ ପୁଅକୁ କାହିଁକି ଯେ କୁଦୃଷ୍ଟିରେ ଦେଖୁଛନ୍ତି କେଜାଣି, ହିଂସା କରି ଗୋଟିଏ କ୍ଲାସ୍‌ରେ ବର୍ଷ ବର୍ଷ ରଖିଦେଉଛନ୍ତି ।

Digitized by srujanika@gmail.com

ବନ୍ଦୁ ବିସ୍ମିତ ହୋଇ କହିଲା—କାହିଁ, ଏମିତ ତ କେବେ ହୁଏନା ।

—ନଷ୍ଟ ହେଉଛି । ମାଷ୍ଟରମାନେ ଏକଜୁଟ ହୋଇ ପିଲାଙ୍କୁ ପାଶ୍ କରାଇବାକୁ ଲାଞ୍ଚ ଖୋଜୁଛନ୍ତି । ମୁଁ ତ ଗରିବ ଲୋକ—ଲାଞ୍ଚ କେଉଁଠୁ ଦେବ ?

ବନ୍ଦୁ ଚୁପ୍ ହୋଇଗଲା । ଅନ୍ନପୂର୍ଣ୍ଣା ସମବେଦନା ଜଣାଇ କହିଲେ—ଏଇଟା କଣ ଭଲ କଥା ? ଆମର ଏଠି କିନ୍ତୁ ସେ ସବୁ ନାହିଁ । ଅମୂଲ୍ୟ ଆମର ପ୍ରତିବର୍ଷ ପାଶ୍ କରି ଘରକୁ ଭଲ ଭଲ ବହି ପୁରସ୍କାର ଆଣୁଛି । କେବେ ତ ଲାଞ୍ଚ ଦେଇନ ।

ଏହି ସମୟରେ ଅମୂଲ୍ୟ ଆସି ବନ୍ଦୁ କୋଳରେ ବସିପଡ଼ି କହିଲା—ସାନମା, କାଲି ରବିବାର । ଆଜି ମାଷ୍ଟର ମହାଶୟଙ୍କୁ ଯିବାକୁ କହିଦିଅ ମା ।

ବନ୍ଦୁ ହସିଦେଇ କହିଲା—ସ୍କୁଲକୁ ଦେଖୁଛ ନାନୀ—ଗପ କଏ କହିଲେ ସେ ଆଉ ଉଠିବନି । ଆରେ କଦମ୍ବ, ମାଷ୍ଟର ମହାଶୟଙ୍କୁ କହିଦେ, ଅମୂଲ୍ୟ ଆଜି ଆଉ ପଢ଼ିବ ନାହିଁ ।

ନରେନ୍ କହିଲା—ଆରେ ଅମୂଲ୍ୟ—ତୁ ଏଡ଼ୁଟିଏ ହେଲୁଣି—ଆଉର ପୁଣି କୋଳରେ ବସୁଚୁ ?

ବନ୍ଦୁ ହସିଦେଇ କହିଲା—ଖାଲି କଣ ଏତିକି ? ରାତିରେ ବ ··

ଅମୂଲ୍ୟ ଲାଜରେ ବନ୍ଦୁର ପାଟିରେ ହାତ ଦେଇ କହିଲା—କୁହନାହିଁ ସାନ ମା ।

ବନ୍ଦୁ ଅବଶ୍ୟ କହିଲାନି । କିନ୍ତୁ ଅନ୍ନପୂର୍ଣ୍ଣା କହିଲା—ଏବେ ବି ସେ ରାତିରେ ସାନ ମାର କୋଳରେ ଶୋଉଛି ।

ବନ୍ଦୁ କହିଲା—ଖାଲି କଣ ଶୋଉଛି—ବାଦୁଡ଼ି ଭଳି ମୋତେ କୁଣ୍ଢେଇ କରି ଶୋଉଛି ।

ଲାଜରେ ଅମୂଲ୍ୟ ମା କୋଳରେ ମୁହଁ ଲୁଚେଇଦେଲା । ନରେନ୍ କହିଲା—ଛିଃ ଛିଃ, ତୁ କଣଟାରେ ? ତୁ ଇଂରାଜୀ ପଢ଼ୁଛୁ ତ ?

ଅନ୍ନପୂର୍ଣ୍ଣା କହିଲେ—ପଢ଼ୁଛି ତ ।

Digitized by srujanika@gmail.com

ନରେନ୍ କହିଲା—ହଉ ଦେଖି ବନାନ କଲୁ—ଇଂଜନ୍ ? ପାରବୁ ତ ?

ଏଲୋକେଶୀ କହିଲା—ସେ ପିଲାଲୋକ—ଏତେ କଡ଼ା ପାଠ କଣ ସେ ପାରବ ?

ଅନ୍ନପୂର୍ଣ୍ଣା କହିଲେ—ବାପା ବନାନ କଲୁ ଦେଖି ।

ଅମୂଲ୍ୟ କନ୍ଦୁ ସାନ ମା କୋଳରୁ ମୁହଁ ଉଠେଇଲାନ । ବନ୍ଦୁ କହିଲା—ତମେ ସବୁ ତାକୁ ଲଜର କରଦେଉଛ—ସେ କେମିତ ବନାନ କହିବ କହିଲ ?

ଏଲୋକେଶୀକୁ ଚାହିଁ ବନ୍ଦୁ କହିଲା—ଅମୂଲ୍ୟ ଆସନ୍ତା ବର୍ଷ ମାଟ୍ରିକ୍ ପରୀକ୍ଷା ଦେବ । ମାଷ୍ଟର ମହାଶୟ କହୁଥିଲେ, ସେ କୋଡ଼ିଏ ଟଙ୍କା ବୃତ୍ତି ପାଇବ । ସେହି ଟଙ୍କାରେ ସେ ତାର କକାଙ୍କ ଭଳି ଯୋତା କିଣିବ ।

ଯଦିଓ କଥାଟା ସତ ତେବେ ସମସ୍ତେ ତାକୁ ପରିହାସ ମନେକରି ହସିପକାଇଲେ ।

ଏଲୋକେଶୀ କହିଲା—ନରେନ୍ ମୋର କଣ ଖାଲି ପାଠ' ଭଲ-ପଢ଼ୁଛି—ଥିଏଟର୍‌ରେ ବ ପାର୍ଟ କରୁଛି । ସେ ଏମିତ ପାର୍ଟ କରେ ଯେ ଲୋକଙ୍କ ଆଖି ଲୁହ ଛଳ ଛଳ ହୋଇଯାଏ । ବାପା ନରେନ୍, ରୁ ସୀତା ପାର୍ଟ କରି କେମିତ କହୁଥିଲୁ ଥରେ ମାଈଙ୍କ ପାଖରେ କହିଲୁ ବାବା ।

ନରେନ୍ ସଙ୍ଗେ ସଙ୍ଗେ ଆଣ୍ଠୁମାଡ଼ି, ହାତ ଯୋଡ଼ି କହିଲା—ଆର୍ଯ୍ୟ-ପୁତ୍ର, କେଉଁ ଖରାପ ବେଳରେ ଦାସୀ ତୁମର...

ବନ୍ଦୁ ପାଟିକରି କହିଲା—ବନ୍ଦକର—ଦେଢ଼ଶୁର ଉପର ମହଲାରେ ଅଛନ୍ତି ।

ନରେନ୍ ଚମକିପଡ଼ି ବନ୍ଦକରଦେଲା ।

ନରେନ୍‌ର ପାର୍ଟ କଥା ଶୁଣି ଅନ୍ନପୂର୍ଣ୍ଣା ମୁଗ୍ଧ ହୋଇଯାଇଥିଲେ । ସେ କହିଲେ—ଶୁଣିଲେ କ'ଣ ହେଲା—ସେ ତ ଠାକୁର ଦେବତାଙ୍କ କଥା କହୁଛି ।

Digitized by srujanika@gmail.com

ବନ୍ଧୁ ବିରକ୍ତ ହୋଇ କହିଲ—ତମେ ଠାକୁର ଦେବତାଙ୍କ କଥା ଶୁଣୁଥାଅ—ଆମେ ଯାଉଛୁ ।

ନରେନ୍ କହିଲା—ତେବେ ଏ ପାର୍ଟ ଥାଉ । ମୁଁ ଏବେ ସାବିତ୍ରୀ ପାର୍ଟ କରୁଛୁ ।

ବନ୍ଧୁ କହିଲ—ଦରକାର ନାହିଁ ।

ବନ୍ଧୁର କଣ୍ଠସ୍ୱର ଶୁଣି ଅନ୍ନପୂର୍ଣ୍ଣାର ଚେତନା ଫେରିଆସିଲ । ସେ ଭାବିଲେ—କଥା ଆଉ ବେଶୀ ଅଗେଇବା ଠିକ୍ ହେବନି । ଏଲୋକେଣୀ କୁଣିଆ ଲୋକ । ସେ ଭିତର କଥା କିଛି ବୁଝିପାରିଲେନି । ସେ କହିଲ—ତେବେ ଥାଉ ନରେନ୍ । ଘରୁ ପୁରୁଷ ଲୋକ କାମଦାମରେ ବାହାରକୁ ଚାଲିଗଲେ ଉପରବେଳା ରୁ ପାର୍ଟ କରିବୁ । ପୁଅ ମୋର କ'ଣ କମ୍ ନାଚ ଗୀତ ବାଜା ବଜେଇବା ଶିଖିଛି ? ଦମୟନ୍ତୀର ସେଇ କାନ୍ଦଣା ଗୀତଟା ଥରେ ଗାଇଲୁ ବାପା । ଦେଖିବୁ ତୋ ମାଈଁମାନେ ଆଉ ତୋତେ ଛାଡ଼ିବେନି ।

ନରେନ୍ କହିଲ—ହଉ ତେବେ ଏବେ ଗାଉଛି ।

ରାଗରେ ବନ୍ଧୁର ସର୍ବାଙ୍ଗ ଜଳିପଡ଼ୁଥାଇଥିଲା । ତେଣୁ ସେ କିଛି ନ କହି ରକ୍ତଚକ୍ଷୁ ଦେଖେଇ ହୋଇ ରହିଲ । ଅନ୍ନପୂର୍ଣ୍ଣା ଏହା ଜାଣିପାରି କହିଲେ—ନା, ଥାଉ ଏବେ ଗୀତ ଗାଇବା ଦରକାର ନାହିଁ ।

ନରେନ୍ କହିଲ—ମୁଁ ଅମୂଲ୍ୟକୁ ଗୀତ ଶିଖାଇଦେବି । ମୁଁ ବାଜା ବଜାଇ ଜାଣେ । 'ତେରେକେଟେ ଧା' ବୋଲଟା ବଡ଼ କଠିନ । ଅଚ୍ଛା ମାଈଁ, ସେଇ ପିଅଲ ହାଣ୍ଡିଟା ଦେଲ ଦେଖି—ମୁଁ ବଜେଇବି ।

ବନ୍ଧୁ ଅମୂଲ୍ୟକୁ କହିଲ—ଯା ଘରେ ବସିବୁ ଯା ।

ଅମୂଲ୍ୟ ମୁଗ୍ଧ ହୋଇ ନରେନ୍‌ର କଥା ଶୁଣୁଥିଲା । ତାର ମୋଟେ ଉଠିବାକୁ ଇଚ୍ଛା ନଥିଲା । ସେ ଚୁପ୍ ଚୁପ୍ କହିଲ—ଆଉ ଟିକିଏ ବସିବା ମା ।

କିନ୍ତୁ ବନ୍ଧୁ ସେ ସବୁ କିଛି ନଶୁଣି ଅମୂଲ୍ୟକୁ ଧରି ସେଠାରୁ ଚାଲିଗଲା । ଅମୂଲ୍ୟକୁ ବନ୍ଧୁ କାହିଁକି ସେ ଧରି ଚାଲିଗଲା, ଅନ୍ନପୂର୍ଣ୍ଣା ବେଶ୍ ବୁଝିପାରିଲେ । ଅମୂଲ୍ୟ ନରେନ୍ ସାଙ୍ଗରେ ପଢ଼ ସଙ୍ଗଦୋଷରୁ ଯେ ମୋଟେ

Digitized by srujanika@gmail.com

ପାଠ ପଢ଼ିବନି ସେଥିପାଇଁ ନରେନ୍ ତାଙ୍କ ଘରେ ରହି ପାଠ ପଢ଼ିବାକୁ ବାପ୍ ମୋଟେ ପସନ୍ଦ କରିବନି, ଏ କଥା ବୁଝିପାରି ସେ ନରେନ୍‌କୁ କହିଲେ—ବାବୁ ନରେନ ! ସାନ ମାଈଁ ତୋର ଭାରି ବଡ଼ଲୋକ । ତାଙ୍କ ଆଗରେ ଏସବୁ ନାଚ ଗୀତ ଆଉ କରିବୁନି । ତାକୁ ମୋଟେ ଭଲଲାଗେନା ।

ଏଲୋକେଶୀ କହିଲେ—ସାନ ଭାଉଜଙ୍କୁ ଯିନା ନାଚ ଗୀତ ଭଲ-ଲାଗେନା, ତେବେ ଏମିତ ଉଠି ଚାଲିଯିବାଟା ଠିକ୍ ହେଉନି ।

ଅନ୍ନପୂର୍ଣ୍ଣା କହିଲେ—ହଁ ସତ କଥା । ସେ ନରେନ୍‌କୁ ଲକ୍ଷ୍ୟକରି କହିଲେ—ବାବୁ, ଭଲକରି ପଢ଼ାପଢ଼ି କଲେ ଯିନା ମା' ବାପାଙ୍କର ଦୁଃଖ ଯିବ । ପଢ଼ାପଢ଼ି ଭଲ କରିବାକୁ ଚେଷ୍ଟାକର । ତୁମେ ଅମୂଲ୍ୟ ସଙ୍ଗରେ ବେଶି ମିଳାମିଶା କରିବନି—ସେ ପିଲାଟାଏ—ତୁମଠାରୁ ଢେର୍ ଶ୍ରେଷ୍ଠ ।

କଥାଟା ଶୁଣି ଏଲୋକେଶୀର ମନ ଫିକା ପଡ଼ିଗଲା । ସେ କହିଲା—ତମେ ଠିକ୍ କହୁଛ । ମୋ ପୁଅ ଗରିବ—ସେ ଗରିବ ପିଲାଙ୍କ ଭଳି ରହିବା ଉଚିତ । ତମେ ଯାହା କହିଲ ଯେ, ତମ ଅମୂଲ୍ୟ ଶ୍ରେଷ୍ଠ ପିଲା—ମୋ ପୁଅ କ'ଣ ବୁଢ଼ାଟାଏ ? ବର୍ଷେ କି ଦେଢ଼ ବର୍ଷ ସାନ ବଡ଼ ହେବେ । ମୋ ପୁଅ କ'ଣ ବଡ଼ଲୋକ ଘର ପିଲାଙ୍କ ସାଙ୍ଗେ ମିଶିନି—ଏଇଠି ଆସି ମିଶୁଛି ! ତାଙ୍କ ଥିଏଟର୍ ଦଳରେ ତ କେତେ ରାଜା ମହାରାଜାଙ୍କ ପୁଅ ଅଛନ୍ତି ।

କଥାଟା ଶୁଣି ଅନ୍ନପୂର୍ଣ୍ଣା ବ୍ୟସ୍ତ ହୋଇଉଠି କହିଲେ—ସେ କଥା କହୁନି ନାନୀ । ମୁଁ କ'ଣ କହୁଥିଲି କି—

—ଆଉ କ'ଣ କହିଥାନ୍ତ ? ମୁଁ କଣ ଏତେ ବୋକା ଯେ ଏ କଥାଟା ବୁଝିପାରିଲିନି ! ସିଏ କହିଲେ—ନରେନ୍ ଆମ ଘରେ ରହି ପଢ଼ାପଢ଼ି କରିବ—ସେଥିପାଇଁ ଆସିଲି । ନହେଲେ କ'ଣ ମୁଁ ନରେନ୍‌କୁ ପଢ଼େଇ ପାରି ନଥାନ୍ତି କି ?

ଅନ୍ନପୂର୍ଣ୍ଣା ଲାଜରେ ଝରମରି ଯାଇ କହିଲେ—ଭଗବାନ ଜାଣନ୍ତି, ମୁଁ ସେ କଥା ମୋଟେ କହୁନି । ମୁଁ କଣ କହୁଲି କି ମା'ର ଦୁଃଖ ଯେଉଁଥିରେ ଦୂର ହେବ—

Digitized by srujanika@gmail.com

ଏଲେକେଶୀ କହିଲେ—ସେଇଆ ହେଉ । ଆରେ ନରେନ୍ ଯା ଯା, ବାହାରେ ଖେଳିବୁ । ବଡ଼ପିଲାଙ୍କ ସାଙ୍ଗରେ ମିଶିନା । ଏହା କହି ପୁଅକୁ ଠେଲି ଠେଲି ନେଇ ବାହାରକୁ ଚାଲିଗଲେ ।

ଅନ୍ନପୂର୍ଣ୍ଣା ଝଡ଼ ବେଗରେ ବନ୍ଦୁ ଘରକୁ ଯାଇ କାନ୍ଦ କାନ୍ଦ ସ୍ୱରରେ କହିଲେ—ତୁ କାହିଁକି ଉଠି ଚାଲିଆସିଲୁ କହିଲୁ ? ତୋ ଲାଗି କ'ଣ ବନ୍ଧୁବାନ୍ଧବ ଘରକୁ ଆସିବେ ନାହିଁ ?

ବନ୍ଦୁ ଅଭିମାନିଆ ସ୍ୱରରେ କହିଲା—ମୋ ଲାଗି ବନ୍ଧୁବାନ୍ଧବ କାହିଁକି ଆସିବେନି ? ମୁଁ ଯଦି ବାଧା ଦେଉଛି ତେବେ ମୁଁ ପୁଅକୁ ନେଇ ଏ ଘରୁ ଚାଲିଯାଉଛି ।

—ତୁ କୁଆଡ଼େ ଯିବୁ ?

—କୁଆଡ଼େ ଯିବି ସେ କଥା ତୁମକୁ ଯେ କହିବି, ସେ କଥା ଭାବନାହିଁ ।

—"ସେ କଥା ମୁଁ ଜାଣେ । ପାଞ୍ଚଜଣଙ୍କ ଆଗରେ ଯେପରି ମୁହଁ ଦେଖେଇ ହେବନି ସେମିତିକା କାମ ତୁ କରିବୁ ଗୁଡ଼ାକୁନି । ଚିରଦିନ ଏ ବୋହୂ ଲାଗି ମୁହଁ ପୋଡ଼ି ପାଉଁଶ ହୋଇଗଲା ।" ଏଇ କଥା କହି ଫେରି ଯାଉଁ ଯାଉଁ ମାଧବ ଘରଭିତରକୁ ପଶି ଆସିଲେ । ମାଧବକୁ ଦେଖି ରାଗରେ ଜଳିଯାଇ କହିଲେ—"ମାଧବ, ତମେମାନେ ଆଉ କେଉଁଠି ଯାଇ ରହ; ନହେଲେ ଏ ବୋହୂଟାକୁ ବିଦାକର । ସ୍ତ୍ରୀକୁ ନେଇ ଆଉ ଚଳିହେବନି । ସେ କଥା ସ୍ପଷ୍ଟ ତୁମକୁ କହିଦେଇଗଲି ।" ଏହା କହି ସେ ଚାଲିଗଲେ ।

ମାଧବ ଆଶ୍ଚର୍ଯ୍ୟ ହୋଇ ବନ୍ଦୁକୁ ପଚାରିଲା—କ'ଣ ହୋଇଛି ?

ବନ୍ଦୁ କହିଲା—ମୁଁ ଜାଣିନି । ଶାଶୂ ତ କହିଗଲେ—ଏବେ ଆମକୁ ବିଦା କରିଦିଅ ।

ମାଧବ କିଛି ନକହି ଖବରକାଗଜଟା ନେଇ ବାହାରକୁ ଚାଲିଗଲା ।

Digitized by srujanika@gmail.com

# ପାଞ୍ଚ

ନନ୍ଦେ ଯେ ବୋକା ଭଳି ଦେଖାଯାଉଥିଲେ ଏ କଥା କହିବା ଭୁଲ୍ । ସେ ଲକ୍ଷ୍ୟକଲେ ଯେ ନୀପେନ୍ଦ୍ରାନ ସାନଶାଉଳଙ୍କର ଅନେକ ଟଙ୍କା-ପଇସା ଅଛି । ତେଣୁ ସେ ତାଙ୍କ ଆଡ଼କୁ ଢଳିଲେ । ପ୍ରତିଦିନ ରାତିରେ ସ୍ୱାମୀ ପ୍ରିୟନାଥଙ୍କୁ ଛଳନାର ଭର୍ତ୍ସନା କରି କହନ୍ତି—"ତୁମଲାଗି ଆଜି ମୋର ସବୁ ଗଲା । ତୁମ ଘରକୁ ନଯାଇ ଏଠି ଥିଲେ ମୁଁ ଆଜି ରଜାର ମା ହୋଇଥାନ୍ତି । ମୋର ଧୁନା ବୃନ୍ଦବନ ପୁଅକୁ ଛାଡ଼ି ମୋ ସାନଶାଉଳ କଣ ଏମିତିକା କାଳିଆ ଭୂତ ପିଲାଟାକୁ..." ଛାଡ଼ି କହି ଦୀର୍ଘ ନିଶ୍ୱାସ ପକାଇ କହିଲେ—"ଉପରେ ଭଗବାନ ଅଛନ୍ତି ।" ଏହା କହି ଶୋଇପଡ଼ନ୍ତି । ପ୍ରିୟନାଥ ମଧ୍ୟ ବୋକାଙ୍କ ଭଳି ଅନୁତାପ କରି ଶୋଇପଡ଼ନ୍ତି । ଏମିତି କରି ସ୍ୱାମୀ ସ୍ତ୍ରୀ ଦିନ କାଟନ୍ତି ଓ ସାନବୋହୂ ପ୍ରତି ନଣନ୍ଦଙ୍କର ସ୍ନେହ ପ୍ରୀତିର ବନ୍ୟା ଉଚ୍ଛୁଳିପଡ଼େ ଦିନକୁ ଦିନ ।

ଆଜି ଦିପରବେଳା, ଏଲୋକେଶୀ ବୋହୂକୁ ଦେଖି କହିଲେ—ତୁମର ଏମିତି କଳା ଝୁଚୁ ମୁଚୁ ଲମ୍ବା କେଶ, କେବେ ଯେ କୁଣ୍ଡାଇଛ, ମୁଁ ଦେଖିନି । ଅଜି ପରା ଆମ ଘରକୁ ଜମିଦାରଙ୍କ ଝିଅ ବୋହୂ ଆସିବେ— ଆସ ମୁଁ ତୁମ ମୁଣ୍ଡ କୁଣ୍ଡାଇଦିଏ ।

ବୋହୂ କହିଲା—ନା ଅପା, ମୋ ମୁଣ୍ଡରେ ଲୁଗା ରହେନା । ତା ପରେ ପୁଅ ବଡ଼ ହେଲଣି । ମୁଣ୍ଡ କୁଣ୍ଡାଇଲେ ଦେଖିବ ।

ଏଲୋକେଶୀ ଆଶ୍ଚର୍ଯ୍ୟ ହୋଇ କହିଲା—ଏ କି କଥା ? ପୁଅ ବଡ଼ ହେଲେ କଣ ସଧବା ନାରୀ ମୁଣ୍ଡ ବାନ୍ଧିବନି ନା କଣ ? ମୋ ନରେନ୍ଦ୍ରନାଥ ସେ ଶଇଁଟୋକାର ମୁହଁରେ କଳା ବୋଳିଦେବ । ମୋ ପୁଅ ତାଠୁଁ କେତେ ଛ ମାସ ବଡ଼ ହେବ । ତା ବୋଲି କଣ ମୁଁ ମୁଣ୍ଡ କୁଣ୍ଡାଇବିନି ?

ବୋହୂ କହିଲା—ତମେ ମୁଣ୍ଡ କାହିଁକି କୁଣ୍ଡାଇବନି । ତମେ ତ ତମ ପୁଅ ଆଗରେ ମୁଣ୍ଡ ବରାବର କୁଣ୍ଡାଉଛ । ସ୍ନୋ ପାଉଡ଼ର ଲଗାଉଛ ।

Digitized by srujanika@gmail.com

ସେଟା ଚଳିଗଲାଣି । କିନ୍ତୁ ମୁଁ ଆଜି ଯଦି ମୁଣ୍ଡ କୁଣ୍ଡାଇବି ମୋର ଅମୂଲ୍ୟ ମୋତେ ଧାଁ କରି ଚାହିଁରହିବ । ଚାରିଆଡ଼େ କହିବୁଲିବ । ଛିଃ ଛିଃ, ଭାରି ଲାଜ କଥା ହେବ । ଭଲଲାଗିବନି ।

ଅନ୍ନପୂର୍ଣ୍ଣା ସେଇ ବାଟ ଦେଇ ଯାଉଥିଲେ । ବନ୍ଦୁର ଆଖି ଛଳ ଛଳ ହେଉଥିବାର ଦେଖି କହିଲେ—ଆରେ ତୋର କ'ଣ ହେଲା ? ଆସିଲୁ ତୋ ଦେହ ଟିକେ ଦେଖେଁ ।

ନଣନ୍ଦ ଆଗରେ ଲାଜ କରି ବନ୍ଦୁ କହିଲା—ସବୁଦିନେ କଣ ଦେହ ଦେଖିବ ? ମୁଁ କଣ ଛୋଟ ପିଲା ହୋଇଛି ଯେ, ଜର ହେଲେ ଜାଣି-ପାରିବିନି ।

ଅନ୍ନପୂର୍ଣ୍ଣା କହିଲେ—ତୁ ହୁଣ୍ଡୀଟାଏ । ଏବେ ଭାଦ୍ରବ ଆଶ୍ୱିନ ମାସ । ଋତୁ ବଦଳୁଛି । ପାଖକୁ ଆସେ ।

ବନ୍ଦୁ କହିଲା—କହୁଛି ତ ଦେହ ଖରାପ ହୋଇନି । କେବେ ପାଖକୁ ଯିବିନି । ତେବେ ସୁଦ୍ଧା କହୁଚ ପାଖକୁ ଆସେ ।

ଅନ୍ନପୂର୍ଣ୍ଣା କହିଲେ—"ଦେଖ ଲୁଚଉନାହୁଁ ତ ?"—ଏହା କହି କହି ଚାଲିଯାଉଥିଲେ ।

ବନ୍ଦୁ କହିଲା—ଅପା, ମୁଣ୍ଡ କୁଣ୍ଡାଇବି ନା ?

ଅନ୍ନପୂର୍ଣ୍ଣା ଫେରିଆସିଲେ । ବନ୍ଦୁ ଯେ କାହିଁକି ଆଜି ଏ କଥା କହିଲା, ତାହା ବୁଝିପାରି ଏଲୋକେଶୀକୁ କହିଲେ—ଅପା, ସାନବୋହୂକୁ ମୁଁ କେତେ କହିଲିଣି । ହେଲେ କ'ଣ ହେବ ସେ ଶୁଣୁ ନାହିଁ । ତା ମୁଣ୍ଡରେ ଏତେ ବାଳ, ତାକୁ କୁଣ୍ଡାଇ ଗଣ୍ଠି ପକାଇବନି । ଏତେ ଲୁଗାପଟା, ଅଳଙ୍କାର—ତାକୁ ବି ପିନ୍ଧିବନି । ତାର ସବୁ ସୃଷ୍ଟିଛଡ଼ା କଥା । ପୁଅ ବି ସେମିତି । ସେ ଦିନେ କ'ଣ କହିଲା, ଶୁଣିବୁ ସାନବୋହୂ ? କହିଲା—ଭଲ ଲୁଗାପଟା ପିନ୍ଧିଲେ କଣ ହୁଏ ? କାହିଁ ସାନବୋଉ ତ ମୋତେ ଭଲ ଲୁଗାପଟା ପିନ୍ଧୁନି ?

ଗର୍ବରେ ବନ୍ଦୁ ହସିଦେଇ କହିଲା—ପୁଅକୁ ଭଲ ମଣିଷ କରିବାକୁ ହେଲେ ମାଆକୁ ଏମିତି ସୃଷ୍ଟିଛଡ଼ା କାମ କରିବାକୁ ପଡ଼େ । ସେ ସୁଦନ

Digitized by srujanika@gmail.com

ଆସି, ଅମୂଲ୍ୟ ଯଦ ମଣିଷ ହୁଏ, ତୁମେ ଯଦ ସେ ପର୍ଯ୍ୟନ୍ତ ବଞ୍ଚିଥିବ ଅପା, ତେବେ ତୁମେ ଦେଖିବ—ସମସ୍ତେ କହିବେ—ଏ ହେଉଛି ଅମୂଲ୍ୟର ମାଆ । କହୁ କହୁ ତା ଆଖି ଲୁହ ଛଳଛଳ ହୋଇଗଲା ।

ଅନ୍ନପୂର୍ଣ୍ଣା କହିଲେ—ଯେଉଁଥିପାଇଁ ତ ତୋ ପୁଅ ବିଷୟରେ ଆମେ କିଛି କଥା କହୁନୁ । ଭଗବାନ ତୋର ମନୋବାଞ୍ଛା ପୂର୍ଣ୍ଣ କରନ୍ତୁ । କିନ୍ତୁ ଅମୂଲ୍ୟ ଯେ ମଣିଷ ହେବ, ଦଶ ଜଣରେ ଗଣତି ହେବ; ଏ ଭରସା କିନ୍ତୁ ହେଉନି ।

ପଣତ କାନରେ ଲୁହ ପୋଛୁ ପୋଛୁ ବିନ୍ଦୁ କହିଲା—ଏହି ଆଶା ନେଇ ତ ମୁଁ ବଞ୍ଚିଛି । କିନ୍ତୁ ଯଦ ମୋର ଏହି ଆଶା କେବେ ମିଛିଲା ଯାଏ ତେବେ ମୁଁ ପାଗଳୀ ହୋଇଯିବି ।

ଅନ୍ନପୂର୍ଣ୍ଣା ନିସ୍ତବ୍ଧ ହୋଇ ରହିଲେ । ସେ ସାନବୋହୂର ମନ କଥା ବେଶ୍ ଭଲକରି ଜାଣନ୍ତି । କିନ୍ତୁ ଏମିତିକା ଆଶା କେବେ ସେ ଉପଲବ୍ଧି କରିନଥିଲେ । ଆଜି ସେ ଜାଣିଲେ, ବିନ୍ଦୁ କାହିଁକି ଅମୂଲ୍ୟ ବିଷୟରେ ଏତେ ସତର୍କ । ନିଜ ପୁଅର ମଙ୍ଗଳ କାମନା କରୁଥିବା ସାନବୋହୂର ମୁହଁକୁ ଚାହିଁ ତା ପ୍ରତି ଅନେକ ଶ୍ରଦ୍ଧା ତାଙ୍କ ମାତୃ ହୃଦୟରେ ପୁରିଗଲା । ଆପେ ଆପେ ଝରିପଡ଼ୁଥିବା ଲୁହକୁ ସେ ମୁହଁ ଫେରାଇ ଗୋପନ କରି ନେଲେ ।

ଏଳୋକେଶୀ କହିଲେ—ସେ ଯାହାହେଉ ସାନବୋହୂ ଆଜି ମୁଁ ତୁମର···

ସଙ୍ଗେ ସଙ୍ଗେ ପ୍ରତିବାଦ କରି ବିନ୍ଦୁ କହିଲା—ମୋର ନୁହେଁ ଅପାଙ୍କର ମୁଣ୍ଡ ଭୁଣ୍ଡାଇଦଅ । ଏ ଘରେ ପାଦ ଦେବାଦିନୁ କେବେ ତାଙ୍କର ମୁଣ୍ଡ ଭୁଣ୍ଡାହେବା ଦେଖିନି । ଏହା କହି ମୁହଁ ଚିପି ହସିଦେଇ ଚାଲିଗଲା ।

ପାଞ୍ଚ ଛଅଦିନ ପରେ ଦିନେ ବାରିକ ଯାଦବଙ୍କୁ ଖିଅର କରି ଉପର ମହଲରୁ ଫେରୁଥିବା ବେଳେ ଅମୂଲ୍ୟ ତାକୁ ଅଟକାଇ କହିଲା—କୈଳାସ ଭାଇ, ନରେନ୍ଦ୍ର ଭାଇଙ୍କ ପରି ତୁମେ ବାଳ କାଟିଦେଇପାରିବ ?

Digitized by srujanika@gmail.com

କୈଳାସ ଆଶ୍ଚର୍ଯ୍ୟ ହୋଇ କହିଲା—ସେ କେମିତିକା ବାଳକଟା ସାନବାବୁ ?

ଅମୂଲ୍ୟ କହିଲା—ଦେଖ ଏଠି ଅଧା, ସେଠି ବାରଣା—ଆଉ ଦେଖ ଏହି ବେକ ପାଖରେ ଏକାବେଳକେ ସାନ ସାନ କରି କାଟିବ । କ'ଣ କାଟିପାରିବ ନା ନାହିଁ ?

କୈଳାସ ହସିଦେଇ କହିଲା—ମୋ ବାପା ହେଲେ ବି ଏମିତିକା ବଗିଚା ବାଳ କାଟିପାରିବେ ନାହିଁ ।

ଅମୂଲ୍ୟ କହିଲା - ତମେ ତ ବାରିକ—ନିଶ୍ଚୟ କାଟିପାରିବ । ଦେଖ ଭୟ ନାହିଁ । ଏଠି ବାରଣା ସେଠି ଆଠଣା···

ବାରିକ ରକ୍ଷା ପାଇବାକୁ ଯାଇ କହିଲା—ସାନବାବୁ ଆଜି କି ବାର କି ? ତା'ପରେ ତମ ସାନମା ହୁକୁମ ନଦେଲେ ତ ହେବନି ।

"ହଉ ତେବେ ରୁହ ମୁଁ ମା'ଙ୍କୁ କହୁଛି ।" କହି ଘର ଭିତରକୁ ଦୌଡ଼ି ପଳାଇଲା । ଘରେ ପଶୁଣୁ କହିଲା—ସାନମା, ତମେ ଶୀଘ୍ର ଆସିଲ ।

ବିନ୍ଦୁ ଗାଧୋଇସାରି ପୂଜା କରିବାକୁ ଯାଉଥିଲେ । ସେ କହିଲେ—ଆରେ ମତେ ଛୁଅଁ ନା । ମୁଁ ଠାକୁର ପୂଜା କରିବାକୁ ଯାଉଛି ।

—ପରେ ତମେ ପୂଜା କରିବ । ତମେ ଆଗେ ଆସି ବାରିକକୁ ଟିକଏ ହୁକୁମ ଦେଇ ଗଲ—ନହେଲେ ସେ ମୋ ବାଳ କାଟୁନି ।

ଏହା ଶୁଣି ବିନ୍ଦୁ ଆଶ୍ଚର୍ଯ୍ୟ ହୋଇଗଲା । ଯେ କୌଣସି ସମୟରେ ତାର ବାଳ କାଟିବାକୁ ହେଲେ କେତେ ମାରଧର କରିବାକୁ ପଡ଼େ । ଆଜି ଏମିତ ଆଗ୍ରହ କାହିଁକି ବୋଲି -ସେ ବାହାରକୁ ଆସିଲା । ବାରିକ କହିଲା—ନରେନ୍‌ବାବୁଙ୍କ ଭଳି ବାଳ କାଟିବାକୁ ଫରମାସୀ ହୋଇଛି । କେଉଁଠି ବାରଣା, କେଉଁଠି ଛଅଣା, କେଉଁଠି ଏକଅଣା, ଏମିତ ବାଳ କାଟିବାକୁ ହେବ । ମୋତେ ଅଜ୍ଞ ସେମିତ କାଟିଆସିବନି ।

"ତୁମେ ନିଶ୍ଚୟ କାଟିପାରିବ । ତମେ ଟିକେ ଠିଆ ହୁଅ । ମୁଁ ନରେନ ଭାଇଙ୍କୁ ଡାକିଆଣେ ।"—କହି ଅମୂଲ୍ୟ ଦୌଡ଼ି ଚାଲିଗଲା । ନରେନ୍‌କୁ ବହୁ ଖୋଜାଖୋଜି କରି ନପାଇ ଫେରିଆସି କହିଲା—ସେ

Digitized by srujanika@gmail.com

କାହାନ୍ତି । ସେ ନଥିଲେ କାହିଁ—ତମେ ଟିକେ ଠିଆହୋଇ ବତେଇଦେବ ତ ସାନମା । ମୁଣ୍ଡ ଉପରୁ ବାରଣା, ଆରପଟୁ ଚୁରଣା, ସେପଟୁ ଆଠଣା ଓ ପଛପଟୁ ଗ୍ରେଟ ଗ୍ରେଟ କରି କାଟିଦେବ ।

ଅମୂଲ୍ୟର ବ୍ୟଗ୍ରତା ଦେଖି ବନ୍ଧୁ ହସିଦେଇ କହିଲି—ମୁଁ ପରା ଏବେ ପୂଜା କରିବାକୁ ଯାଉଛି ।

—ତୁମେ ପରେ ପୂଜା କରିବ । ନହେଲେ ଛୁଇଁଦେବ ।

ଏହା ପରେ ବାଧ୍ୟ ହୋଇ ବନ୍ଧୁ ଠିଆହେଲି । ବନ୍ଧୁ ବାରିକକୁ ଆଖି ଠାରି ମାରିଦେଲି । ତେଣୁ ବାରିକ ସବୁଆଡ଼େ ସମାନ କରି ବାଳ କାଟିଦେଲା । ଅମୂଲ୍ୟ ମୁଣ୍ଡରେ ହାତ ମାରି କହିଲା—"ହଁ ମୁଁ ଏମିତି ବାଳ କାଟିବାକୁ କହିଥିଲି । ଠିକ୍ ହୋଇଛି ।"—କହି ଡେଇଁ ଡେଇଁ ଚାଲିଗଲା ।

ବାରିକ ଛତା ହାତରେ ଧରି ଚାଲି ଯାଉଁ ଯାଉଁ କହିଲା—ଦେଖୁଛି କାଲି ଆପଣଙ୍କ ଘରକୁ ଆସିହେବନି ।

ବନ୍ଧୁ ଗ୍ରେଷେଇ ଘରେ ବସି ଶୁଣିଲି ଯେ ଅମୂଲ୍ୟ ତା କଦାର ମୁଣ୍ଡ କୁଣ୍ଡାଇବା ବ୍ରସ୍ ଖୋଜି ଖୋଜି ପାଉନି । ସେ କାନ୍ଦି କାନ୍ଦି ଆସି ବନ୍ଧୁ ପିଠିରେ ହାମୁଡ଼େଇପଡ଼ି କହିଲା—"ବାରିକ ବାଳକଟା ଖରାପ କରି-ଦେଇଛି । କାଲି ତାକୁ ମାରିପକେଇବ ।" ବନ୍ଧୁ ନହସି ରହିପାରିଲିନି । ଅମୂଲ୍ୟ କାନ୍ଦି କାନ୍ଦି କହିଲା—ତୁମ ଆଖି କଣ କଣା ? କେମିତି ବାଳ କାଟିଛି ଦେଖିପାରୁନ ?

ଅମୂଲ୍ୟକୁ କାନ୍ଦିବା ଦେଖି ଅନ୍ନପୂର୍ଣ୍ଣା ଘରଭିତରକୁ ପଶିଆସି କହିଲେ—କଣ ଖରାପ ହୋଇଗଲା ଯେ ? ଯଦି ବା କିଛି ଖରାପ ହୋଇଛି ତେବେ ସେ କାଲି ଆସି ପୁଣି ବାଗେଇଦେଇଯିବ ।

ଅମୂଲ୍ୟ ଆହୁରି ରାଗିଯାଇ କହିଲା—ଆଉ କେମିତି ବାଗେଇବ ? ଏଠି ବାଳ କାହିଁ ?

ଅମୂଲ୍ୟକୁ ଶାନ୍ତ କରିବାକୁ ଯାଇ ଅନ୍ନପୂର୍ଣ୍ଣା କହିଲେ—ବାରଅଣା ନହେଉ ଦଶଅଣା ତ ହୋଇପାରିବ ?

—ନାଆଁ ପାଉଁଶ ହେବ । ଆଠଅଣା ବା ଦଶଅଣା କଣ ଫେସନ ? ନରେନ୍ ଭାଇଙ୍କ ପରି—ବାରଅଣା ବାଳକଟା କହାଇ ଦରକାର ।

Digitized by srujanika@gmail.com

ଯେତେ ବୁଝାଇଲେ ବ ଅମୂଲ୍ୟ ସେଦନ ନଖାଇ ରୁହିଲା ।

ଅନ୍ନପୂର୍ଣ୍ଣା କହିଲେ—ଆରେ ବନ୍ଦୁ, ତୋ ପୁଅର ବାଲକାଟିବା ସଉକ କେବେଠୁ ଏମିତ ହେଲା ?

ବନ୍ଦୁ ହସିବାକୁ ଆରମ୍ଭ କରୁଥିଲା—କନ୍ତୁ ପରମୁହୂର୍ତ୍ତରେ ନଜକୁ ସମ୍ଭାଳନେଇ କହିଲା—ମୋତେ ଭୟ ଲାଗୁଛ—ଧୀରେ ଧୀରେ ସବୁ କୁକର୍ମର ଆରମ୍ଭ ଏମିତ ହୋଇଯିବ ।

ଅନ୍ନପୂର୍ଣ୍ଣା ଆଉ କଛି କହିପାରଲେ ନାହିଁ ।

× × × ×

ଦୁର୍ଗାପୂଜା ସମସ୍ତ ଆସିଲା । ଜମିଦାରଙ୍କ ଘରେ ନାଚ ଗୀତ ମହା-ସମାରୋହରେ ହେବାର ଆୟୋଜନ ଚାଲିଲା । ନରେନ୍ ସେ ନାଚ ଗୀତରେ ଭାଗନେଇଥିଲା ।

ସପ୍ତମୀ ରାତରେ ଅମୂଲ୍ୟ ଯାନମାଙ୍କୁ କହିଲା—ମା, ଜମିଦାରଙ୍କ ଘରେ ଯାତ୍ରା ହେଉଛ—ଦେଖିବାକୁ ଯିବ କ ?

ବନ୍ଦୁ କହିଲା—ହେଉଛ ନା ହବରେ ?

ଅମୂଲ୍ୟ କହିଲା—ନରେନ୍ ଭାଇନା କହୁଛନ୍ତ ଦଶଟାରୁ ଆରମ୍ଭ ହେବ ।

—ଏବେ ଆଶ୍ୱିନ ମାସ । ରାତରେ କାକର ପଡ଼ିବ । କାଲି ସକାଳୁ ତୋ ବାବାଙ୍କ ସାଙ୍ଗରେ ଗଲେ ଆଗରେ ଜାଗା ପାଇ ବସିବୁ ।

ଅମୂଲ୍ୟ କାନ୍ଦ କାନ୍ଦ କହିଲା—ନା, ଏବେ ଯିବ । ବାବା ତ ଏତ ଯାଇନପାରନ୍ତ ।

ବନ୍ଦୁ କହିଲା—ଯଦ ଦଶଟାରୁ ଯାତ୍ରା ଆରମ୍ଭ ହେବ, ତେବେ ସେତେବେଳକୁ ବାକର ସାଙ୍ଗରେ ଯିବୁ—ଏବେ ଶୋଇପଡ଼ ।

ଅମୂଲ୍ୟ ରାଗ ଓ ଅଭିମାନରେ ଯାଇ ଶୋଇରହିଲା । ବନ୍ଦୁ ତାକୁ କୋଳକୁ ଟାଣିଆଣିବାରୁ ରାଗରେ ହାତ ଛଡ଼ାଇଦେଇ ଖଟର ଅନ୍ୟ ଆଡ଼କୁ

Digitized by srujanika@gmail.com

ଚ୍ଛଲିଗଲା । ତା'ପରେ ସମସ୍ତେ ଶୋଇପଡ଼ିଲେ । ହଠାତ୍ ବାହାର କାନ୍ଥ ଘଣ୍ଟାର ଠନ୍ ଠନ୍ ଶବ୍ଦରେ ତା ନିଦ ଚ୍ଛଉଁକରି ଭାଙ୍ଗିଗଲା । ଘଣ୍ଟା ବାଜି ଚ୍ଛଲିଥାଏ—ଏକ, ଦୁଇ, ତିନି । ସେ ବନ୍ଦୁକୁ ହଲେଇ ଉଠାଇଦେଇ କହିଲା—ଉଠ ଉଠ ଯାନମା । ଘଣ୍ଟାରେ ଏବେ ତିନିଟା, ଚ୍ଛରିଟା ବାଜିଲା । ତା'ପରେ ପୁଣି ପାଞ୍ଚଟା, ଛଅଟା ଓ ସାତଟା ବାଜିଲା । ଅମୂଲ୍ୟ ପୁଣି ବଡ଼ ପାଟିକରି କହିଲା—ହେଇ ଏବେ ସାତଟା ବାଜିଲା—ମୁଁ କେତେବେଳେ ଯିବି । ତା'ପରେ ପୁଣି ଆଠ, ନଅ, ଦଶ, ଏଗାର ଓ ବାରଟା ବାଜିବାର ଶୁଣି ମନକୁ ମନ ଚୁପ୍ ହୋଇ ରହିଗଲା । ପାଖ ଘରେ ମାଧବ ଶୋଇଥିଲେ । ଅମୂଲ୍ୟର ପାଟି ଶୁଣିପାରି ତାଙ୍କ ନିଦ ଭାଙ୍ଗିଗଲା ।

ସେ ବଡ଼ପାଟିରେ କହିଲେ—ଆରେ ଅମୂଲ୍ୟ, ତୋର କଣ ହେଲାକିରେ ? ଅମୂଲ୍ୟ କିଛି ନକହି ଚୁପ୍ ରହିଲା । ବନ୍ଦୁ ହସିଦେଇ କହିଲା —ସେ ଯେମିତି ଡାକ ଛାଡ଼ୁଛି, ଘରେ ନିଆଁ ଲାଗିଗଲେ ବି କେହି ଏମିତି ଡାକିବନି ।

ଅମୂଲ୍ୟ ନୀରବ ହେବା ଦେଖି ବନ୍ଦୁର ମନରେ ଦୟାହେଲା । ସେ କହିଲା—ହଉ ଯା । ତେବେ କାହା ସାଙ୍ଗରେ ଚ୍ଛଲିଯିବୁନି ।

ବନ୍ଦୁ ଭୈରବ ସାଙ୍ଗରେ ଅମୂଲ୍ୟକୁ ଯାତ୍ରା ଥାନକୁ ପଠାଇଦେଲା । ତା ପରଦିନ ଦଶଟା ପର୍ଯ୍ୟନ୍ତ ଯାତ୍ରା ଦେଖି ଘରକୁ ପ୍ରଫୁଲ୍ଲ ମନରେ ଫେରିଆସି କହିଲା—ଦାଦା, ତୁମେ କାହିଁ ଗଲ ନାହିଁ ତ ?

ବନ୍ଦୁ କହିଲା—ଯାତ୍ରା କେମିତି ହେଲା ?

—ଖୁବ୍ ଭଲହେଲା । ଆଜି ସନ୍ଧ୍ୟାରେ ପୁଣି ଚମତ୍କାର ବାଈନାଚ ହେବ । କଲିକତାରୁ ଦୁ'ଜଣ ନାଚ କରିବାକୁ ଆସିଛନ୍ତି । ନରେନ୍ ଭାଇ ସେମାନଙ୍କୁ ଦେଖିଛନ୍ତି । ଯାନମା ଭଲ ଖୁବ୍ ଭଲ ଦେଖିବାକୁ । ବାପାଙ୍କୁ ବି କହିଛି ।

—"ଭଲ କରିଛୁ"—କହି ମାଧବ ହୋ ହୋ ହୋଇ ହସିଲେ ।

ବନ୍ଦୁ ରାଗିଯାଇ କହିଲା—"ତୁମ ଗୁଣଧର ଭଣଜା କଥା ଶୁଣ ।" ତା'ପରେ ଅମୂଲ୍ୟକୁ କହିଲା—"ଖବରଦାର୍, ତୁ ଆଉ ନାଚ ଦେଖି ଯିବୁନି । କିଏ କହିଲାରେ ସେ ନାଚବାଲି ମୋ ପରି ଦେଖିବାକୁ ?"

Digitized by srujanika@gmail.com

ଅମୂଲ୍ୟ ଉତ୍ତରରେ କହିଲା—ସେ ଦେଖିଛନ୍ତି ।

—କିଏ ନରେନ ? ଆଚ୍ଛା ଅଜି ସେ ଆସୁ ।

ମାଧବ ହସ ବନ୍ଦ କରି କହିଲେ—ତୁମେ କଣ ପାଗଳ ନା କଣ ? ଭାଇ ଏ କଥା ଶୁଣିଛନ୍ତି । ଆଉ ପାଟିତୁଣ୍ଡ କରନା । ତେଣୁ ବନ୍ଦୁ ବାଧ୍ୟ ହୋଇ ମନର ରାଗ ମନରେ ମାରି ରହିଲା ।

ସଂଧ୍ୟା ପୂର୍ବରୁ ଅମୂଲ୍ୟ ଅନ୍ନପୂର୍ଣ୍ଣା ପାଖକୁ ଆସି କହିଲା—ମା ନାଚ ଦେଖି ଯିବି । ଦେଖିକରି ସଙ୍ଗେ ସଙ୍ଗେ ଫେରିଆସିବି ।

ଅନ୍ନପୂର୍ଣ୍ଣା କହିଲେ—ତୋ ମା'କୁ କହି ଯା । ସେ ରାଗୀ ଲୋକ ।

ଅମୂଲ୍ୟ କାନ୍ଦି କାନ୍ଦି କହିଲା—ତୁମେ ସାନମାଙ୍କୁ କୁହ । ମୁଁ ନରେନ୍ ଭାଇଙ୍କ ସାଙ୍ଗରେ ଯାଇ ସଙ୍ଗେ ସଙ୍ଗେ ଫେରିଆସିବି ।

ଅନ୍ନପୂର୍ଣ୍ଣା କହିଲେ—ହଉ ନରେନ୍ ଯଦି ଯାଉଛି ତା ସାଙ୍ଗରେ ଯା ।

କଥାଟା ପାଟିରୁ ଶେଷ ନହେଉଣୁ ଅମୂଲ୍ୟ ଉଆଁଟିଏ ମାରି ଚାଲିଗଲା ।

ଘଣ୍ଟାକ ପରେ ଅମୂଲ୍ୟ କାହିଁ ବୋଲି ବନ୍ଦୁ ଘରଅଡ଼େ ଖୋଜିଲା । ତା ଖୋଜାଖୋଜି ଦେଖି ଅନ୍ନପୂର୍ଣ୍ଣା ଟିକେ ଶଙ୍କିଗଲେ । ପରେ କହିଲେ— ଅମୂଲ୍ୟ ନରେନ୍ ସାଙ୍ଗରେ ନାଚ ଦେଖି ଯାଇଛି । ଏବେ ଫେରିଆସିବ ।

—ତାକୁ ଯିବାକୁ କିଏ କହିଲା ?

ତାଙ୍କର ଅନୁମତି ନେଇ ଯେ ଅମୂଲ୍ୟ ଯାଇଛି ଅନ୍ନପୂର୍ଣ୍ଣା ଏକଥା ଭୟରେ ପ୍ରକାଶ କରିପାରିଲେନି । ସେ ଖାଲି କହିଲେ—ଏବେ ଫେରି-ଆସିବ ।

ବନ୍ଦୁ ରାଗରେ ମୁହଁ ଫୁଲେଇ ସେଠୁ ଚାଲିଗଲା । କିଛି ସମୟ ପରେ ଅମୂଲ୍ୟ ଘରେ ପହଞ୍ଚି ସାନମା ଡାକୁଥିବାର ଶୁଣି ସଙ୍ଗେ ସଙ୍ଗେ ଯାଇ ବାପାଙ୍କ ଖଟ ଉପରେ ଚୁପ୍ କରି ଶୋଇପଡ଼ିଲା । ଯାଦବ ଭାଗବତ ପଢୁଥିଲେ । ସେ ଅମୂଲ୍ୟକୁ ଦେଖି କହିଲେ—କ'ଣ କରେ ଅମୂଲ୍ୟ ? ଅମୂଲ୍ୟ କିଛି ନକହି ଶୋଇପଡ଼ିଲା । କଦମ୍ବ ଆସି କହିଲା—ସାନମା ଡାକୁଛନ୍ତି—ଆସ ଅମୂଲ୍ୟ ।

Digitized by srujanika@gmail.com

ଅମୂଲ୍ୟ ଖଟ ଉପରୁ ଉଠିଆସି ବାପାଙ୍କୁ ଧରି କହିଲା—ବାପା, ତମେ ଆସ ସାନମାଙ୍କ ପାଖରେ ମତେ ଛାଡ଼ିଦେଇ ଆସିବ ।

—ମୁଁ କାହିଁକି ନେବିକରେ ? କଣ ହୋଇଛି କି କଦମ୍ବ ?

କଦମ୍ବ ସବୁକଥା କହିଦେଲା । ଯାଦବ ଦେଖିଲେ, ଏଥିନେଇ ନଷ୍ଟସ୍ପୃ କଳି ହେବ । ଅମୂଲ୍ୟ ମାଡ଼ ଖାଇବ । ଜଣେ ଯିବାକୁ ମନାକରିଛି । ଆଉ ଜଣେ ଯିବାକୁ ଅନୁମତି ଦେଇଛି । ତେଣୁ ସେ ଅମୂଲ୍ୟଙ୍କୁ ସାଙ୍ଗରେ ଧରି ସାନବୋହୂର ଘର ପାଖରେ ଠିଆହୋଇ କହିଲେ—ଅମୂଲ୍ୟକୁ ଏ ଥରକଟା କ୍ଷମା କର ସାନବୋହୂ । ସେ ଆଉ ଏପରି କରିବ ନାହିଁ କହୁଛି ।

ସେ ଦିନ ରାତିରେ ଦୁଇ ଜାଆ ଖାଇ ବସିଥିବା ବେଳେ ବନ୍ଦୁ କହିଲା—ନାନୀ, ମୁଁ ତୁମ ଉପରେ ରାଗୁନି । କିନ୍ତୁ ମୁଁ ଆଉ ଏଠି ଚଳି-ପାରିବିନି । ଅମୂଲ୍ୟ ମୋର ଖରାପ ହୋଇଯିବ । ମୁଁ ମନା କରିବା ସତ୍ତ୍ୱେ ତାର କେମିତି ଦୁଃସାହସ ହେଲା ସେଇ କଥା ଭାବୁଛି । ଯାହା ତ କଲା—ତା ପରେ ତା ବଦମାସୀ ଗୁଣ ଦେଖ । ଘରକୁ ଫେରି ଯେମିତି ମୁଁ ଡାକୁଛି ବୋଲି ଶୁଣିଛି ସେମିତି ଦେଢ଼ଶୁରଙ୍କୁ ସାଙ୍ଗରେ ଧରି ମୋ ପାଖକୁ ଆସିଛି । ନା, ଆଉ ଏଠି ରହିହେବନି । କଲିକତାରେ ପଛେ ଘର ଭଡ଼ାକରି ରହିବି । ଗୋଟିଏ ବୋଲି ପୁଅ । ଖରାପ ହୋଇଗଲେ ତା ପାଇଁ ସାରା ଜୀବନ କାନ୍ଦିବାକୁ ହେବ ।

ଅନ୍ନପୂର୍ଣ୍ଣା ଉଦ୍‌ବିଗ୍ନ ହୋଇ କହିଲେ—ତମେମାନେ ଯଦି ଚାଲିଯିବ ତେବେ ମୁଁ ଏଠି କେମିତି ରହିବି ?

—ତମେ କେମିତି ରହିବ ସେ କଥା ତୁମେ ଜାଣ । ଯାହା କହିବା କଥା ତୁମକୁ କହିଦେଲି । ନରେନ୍ ଭାରି ଖରାପ ପିଲା ।

—ନରେନ୍ କ'ଣ କଲା ? ଧର ସେମାନେ ଯଦି ଦ'ଗାଇ ହୋଇଥାନ୍ତେ, ତା'ହେଲେ ତୁ କ'ଣ କରିଥାନ୍ତୁ ?

ବନ୍ଦୁ କହିଲା—ଏମିତି ଦୁଷ୍ଟ ହୋଇଥିଲେ ହାତ ଗୋଡ଼ ବାନ୍ଧି, ବନ୍ଧୁଅାଡ଼ ଲଗାଇ ବାହାରେ ଛାଡ଼ିଦେଇଥାନ୍ତି । ସେମାନଙ୍କୁ ତୁମେ ବାହାର କରିଦିଅ ।

Digitized by srujanika@gmail.com

ଅନ୍ନପୂର୍ଣ୍ଣା କହିଲେ—ମୁଁ କଣ ସେମାନଙ୍କୁ ତଡ଼ିଦେଇପାରିବି ? ସେମାନଙ୍କୁ ଯିଏ ଆଣିଛି ତାଙ୍କୁ ଯାଇ ତୁ କହୁନୁ—ମୋତେ କାହିଁକି ଏମିତି ଗଞ୍ଜଣା ଦେଉଛ କହିଲୁ ?

—ଦେଢ଼ଶୁରଙ୍କୁ ଏ କଥା କେମିତି କହିବି ଯେ ?

—ଯେମିତି ସବୁ କଥା କହୁଚୁ ସେମିତି କହୁ ।

ଭାତ ଥାଳିଟା ଦୂରକୁ ଠେଲିଦେଇ ବନ୍ଧୁ କହିଲା—ମତେ ତୁମେ ଭୁଲେଇବାକୁ ଚେଷ୍ଟା କରନା । ମତେ ବି ଆସି ସତେଇଶି କି ଅଠେଇଶ ବର୍ଷ ହେଲଣି । ଏ ଘରର ଚାକରବାକର କଥା ନୁହେଁ—ଖୋଦ୍ ଆତ୍ମୀୟ-ସ୍ୱଜନଙ୍କ କଥା । ତମେ ଆଉ ଆଉ ମୁଁ ଏକଥା ଦେଢ଼ଶୁରଙ୍କୁ କହିବାକୁ ଗଲେ ଦେଢ଼ଶୁର ମୋ ଉପରେ ରାଗିବେନି ?

ଅନ୍ନପୂର୍ଣ୍ଣା କହିଲେ—ନିଶ୍ଚୟ ରାଗିବେ । ତୁ କହିଲେ ରକ୍ଷା । ମୁଁ କହିଲେ ସେ ମୋ ମୁହଁ ଚାହିଁବେନି । ଯେତେ ହେଲେ ବି ଆମେ ପର .. ସେମାନେ ଏକା ମା ପେଟର ଭାଇଭଉଣୀ । ଆଉ ଏ କଥା ନେଇ ପାଟିତୁଣ୍ଡ କଲେ ଲୋକେ ମୋତେ ପାଗଳୀ ବୋଲି କହିବେ ।

ବନ୍ଧୁ କିଛି ନକହି ଭାତଥାଳିଟା ଆଉ ଟିକିଏ ଦୂରକୁ ଠେଲିଦେଲା ।

ଅନ୍ନପୂର୍ଣ୍ଣା ଦେଖିଲେ—ବନ୍ଧୁ ଦେଢ଼ଶୁର ଭୟରେ କିଛି କହୁନି । ସେ କହିଲେ—ଆଲୋ ଭାତଥାଳିଟା ତୋର କି ଦୋଷ କଲା ?

ବନ୍ଧୁ ଅଭିମାନରେ କହିଲା—ମୁଁ ଖାଇସାରିଲିଣି ।

ଶୋଇବାକୁ ଯାଇ ବନ୍ଧୁ ଦେଖିଲା, ବିଛଣାରେ ଅମୂଲ୍ୟ ନାହିଁ । ସେ ଫେରିଆସି କହିଲା—ନାନୀ, ଅମୂଲ୍ୟ କାହିଁ ?

ଅନ୍ନପୂର୍ଣ୍ଣା କହିଲେ—ସେ ମୋ ଶେଯରେ ଶୋଇଛି । ଯାଉଚି ଉଠେଇଆଣିବି ।

"ନା ଥାଉ"—କହି ମୁହଁ ଫୁଲେଇ ବନ୍ଧୁ ଚାଲିଗଲା । ରାତି ଅଧରେ ଅନ୍ନପୂର୍ଣ୍ଣାର ଡାକରେ ତା ନିଦ ଭାଙ୍ଗିଗଲା ।

—କଣ ହୋଇଛି ନାନୀ ?

Digitized by srujanika@gmail.com

ଅନ୍ନପୂର୍ଣ୍ଣା କହିଲେ—କବାଟ ଖୋଲି ଏ ଦୁଷ୍ଟଙ୍କୁ ନେଲୁ—ମୋ ବାପ ହେଲେ ବି ଏଥାକୁ ଶୁଆଇପାରିବନି ।

ବନ୍ଦୁ କବାଟ ଖୋଲୁ ଖୋଲୁ ଅନ୍ନପୂର୍ଣ୍ଣା ଅମୂଲ୍ୟକୁ ବନ୍ଦୁର ଖଟ ଉପରେ ଶୁଆଇଦେଇ କହିଲେ—ଦେଖୁଛ ଏଥାର ଦୁଷ୍ଟାମି ଦିନକୁ ଦିନ ବଢ଼ୁଛି । ଆଗରୁ ତ ଏମିତ ନ ଥିଲା । ଖାଲି କହୁଚି—ମତେ ମଶା କାମୁଡ଼ିଲା—ମତେ ପାଣି ଦେ—ମୋତେ ବଞ୍ଚ । କଏ ଏଥା ଲାଗି ରାତସାରା ଚେଇଁବ ? ଏତେ କହୁଛି—ଦିନସାରା ଖଟି ଖଟି ରାତିରେ ଟିକେ ନଶୋଇଲେ ମୋ ଦେହ ଖରାପ ହୋଇଯିବ ।

ବନ୍ଦୁ ଅମୂଲ୍ୟକୁ କୋଳରେ ପୁରାଇ ଆପୁଡ଼ାଇ ଦେଉ ଦେଉ ଅମୂଲ୍ୟ ଶୋଇପଡ଼ିଲା । ମାଧବ ସେ ଘରେ ଶୋଇରହି ପରିହାସ ଛଳରେ କହିଲା—ଭାଉଜ, ସଉକ ମେଣ୍ଟିଲା ତ ?

ଅନ୍ନପୂର୍ଣ୍ଣା କହିଲେ—ମୋର ସଉକ ନୁହେଁ—ସେ ତାର ସାନମା ଭୟରେ ମୋ ପାଖରେ ଯାଇ ଶୋଇଥିଲା । ମୋର ବି ଶିକ୍ଷା ହେଲା । ପୁଅ ପାଖରେ ଶୋଇଲେ କଣ ଘୃଣା କଥା । ତେବେ ତାକୁ କହିଲେ ସେ କହେ—ତୁମ ପାଖରେ ଶୋଇବାକୁ ଲାଜମାଡ଼ୁଛି ।

ତିନିଜଣ ହସିଉଠିଲେ । ଅନ୍ନପୂର୍ଣ୍ଣା କହିଲେ—"ବହୁତ ରାତ ଅନିଦ୍ରା ହେଲାଣି, ଯାଏଁ ଟିକେ ଶୋଇପଡ଼େ ।"—କହି ଚାଲିଗଲେ ।

× × × ×

ଏହା ଭିତରେ ଆଠ-ଦଶ ଦିନ ବିତିଯାଇଛି । ବନ୍ଦୁର ବାପା ତୀର୍ଥଯାତ୍ରାରେ ବାହାରିବାକୁ ସଙ୍କଳ୍ପ କରି ଯିବା ପୂର୍ବରୁ ବନ୍ଦୁକୁ ଟିକେ ଦେଖିବାଲାଗି ତା ଶାଶୁ ଘରକୁ ସବାରି ପଠାଇଥିଲେ । ସବାରି ଆସିବା ଦେଖି ବନ୍ଦୁ ଅମୂଲ୍ୟକୁ ଲୁଚାଇ ଦି ଘଣ୍ଟାଦିନ ବାପଘରେ ଏକୁଟିଆ ବୁଲି ଆସିବାକୁ ଅନ୍ନପୂର୍ଣ୍ଣାକୁ ଚୁପ୍‌କରି କହିଥିଲେ । ସ୍କୁଲକୁ ଯିବାବେଳେ ଅମୂଲ୍ୟ ପାଲିଙ୍କି ଦେଖି ସାନ ମା ପାଖକୁ ଆସିଲା । ତା ପାଦକୁ ଚାହିଁ କହିଲା—ସାନମା, ପାଦରେ ଅଳତା ଲଗେଇଛୁ କାହିଁକି ?

Digitized by srujanika@gmail.com

ପାଖରେ ଅନ୍ନପୂର୍ଣ୍ଣା ଠିଆହୋଇଥିଲେ । ସେ ଅମୂଲ୍ୟର କଥା ଶୁଣି ହସିପକାଉଥିଲେ ।

ବନ୍ଧୁ ହସ ଚାପିଦେଇ କହିଲା—କେବେ ତୋ ବୋହୂ ଆସିବ ସେ ଏବେଠୁ ଆମକୁ କିଛି ଶିଖାଇଦେବୁନି ଦେଖୁଛୁ । ଯା ତୁ ସ୍କୁଲକୁ ।

ଅମୂଲ୍ୟ ସେ କଥା ନଶୁଣି କହିଲା—ମା ତୁମେ ଏତେ ହସୁଛ କାହିଁକି ? ତୁମେ ଅଜା କୁଆଡ଼େ ବୋଧହୁଏ ଯାଉଛ । ମୁଁ କିନ୍ତୁ ଆଜି ସ୍କୁଲକୁ ଯିବନାହିଁ ।

—କୁଆଡ଼େ ଗଲେ କଣ ତୋର ଅନୁମତି ନେଇ ଯିବ ନା କଣ ?

"ମୁଁ ବି ତୁମ ସାଙ୍ଗରେ ଯିବି ।"—କହି ବହିବସ୍ତାନି ନେଇ ଚାଲିଗଲା ।

ଅନ୍ନପୂର୍ଣ୍ଣା କହିଲେ—ପିଲାର ଚାଲିକି ଦେଖ—କହୁଛୁ ଗୋଡ଼ରେ ଅଳତା କାହିଁକି ନାଇଛୁ ? ଗହଣା କାହିଁକି ପିନ୍ଧିଛୁ ? ମୁଁ କହୁଛୁ ତାକୁ ସାଙ୍ଗରେ ନେଇକରି ଯା । ନହେଲେ ସ୍କୁଲରୁ ଫେରି ତୋତେ ନଦେଖିଲେ ନାନା ଝମେଲା କରିବ ।

ବନ୍ଧୁ କହିଲା—ତୁମେ କଣ ଭାବିଛ ସେ ସ୍କୁଲକୁ ଯାଇଛି ? କେଉଁଠି ଲୁଚିଥିବ—ଠିକ୍ ସମୟରେ ଆସି ପହଞ୍ଚିବ ।

ସେଇଆ ହେଲା । ଅମୂଲ୍ୟ କେଉଁଠି ଲୁଚିଥିଲା—ବନ୍ଧୁ ସବାରି ପାଖକୁ ଯାଉଁ ଯାଉଁ ଦୌଡ଼ିଆସି ତା ଲୁଗାକାନି ଧରିପକାଇଲା । ଦୁଇ ଜାଆ ହସିଉଠିଲେ । ଅନ୍ନପୂର୍ଣ୍ଣା କହିଲେ—ଯିବା ସମୟରେ ମାରଧର କରନା—ତାକୁ ସାଙ୍ଗରେ ନେଇଯା ।

ବନ୍ଧୁ କହିଲା—ସେ କଥା ଜାଣିଛି । ଦେଖୁଛୁ ସେ ମୋତେ କୁଆଡ଼େ ପାଦେ ହେଲେ ଛାଡ଼ିଦେବନି । ଅନ୍ନପୂର୍ଣ୍ଣା କହିଲେ—ଯେମିତି ମୁହଁ ବଢ଼େଇଛୁ, ସେମିତି ପାଉଛୁ । ଆରେ ଅମୂଲ୍ୟ, ଦ'ଦିନ ମୋ ପାଖରେ ରହିଲେ ହବନି ?

ଅମୂଲ୍ୟ ମୁଣ୍ଡ ହଲାଇ କହିଲା—"ନା ନା, ତୁମ ପାଖରେ ରହି-ପାରିବନି ।"—କହି ଜୋର୍‌କରି ଯାଇ ସବାରିରେ ବସିପଡ଼ିଲା ।

Digitized by srujanika@gmail.com

# ଛଅ

ବନ୍ଦୁ ପ୍ରାୟ ଦଶଦିନ ହେଲା ବାପଘରୁ ଫେରିଲାଣି । ଅନ୍ନପୂର୍ଣ୍ଣା ଦିନେ ସଂଧ୍ୟାବେଳେ ବନ୍ଦୁର ଘର ଭିତରକୁ ପଶିଯାଇ କହିଲେ—କଣ କରୁଛୁ ସାନବୋଉ ?

ବନ୍ଦୁ ଗୁଡ଼ାଏ ମଇଳା ଲୁଗାପଟା ପାଖରେ ବସି ସ୍ତବଧ ହୋଇ ଚିନ୍ତି-ଦେଉଥିଲା । ଅନ୍ନପୂର୍ଣ୍ଣା କହିଲେ—କଣ ଧୋବା ଆସିଛି କି ? କିଛି ଉତ୍ତର ନଦେବା ଦେଖି ଅନ୍ନପୂର୍ଣ୍ଣା ଟିକିଏ ଉଦ୍‌ବିଗ୍ନ ସ୍ୱରରେ କହିଲେ—କଣ ହୋଇଛି ?

ବନ୍ଦୁ କେତେ ଖଣ୍ଡ ପୋଡ଼ା ସିଗାରେଟ୍ ଦେଖାଇ କହିଲା— "ଅମୂଲ୍ୟର ପକେଟରୁ ଏସବୁ ବାହାରିଲା ।" ବନ୍ଦୁ କାନ୍ଦପକାଇ କହିଲା— "ହୁଏତ ତୁମେ ସେମାନଙ୍କୁ ଏ ଘରୁ ବିଦା କର ନଚେତ୍ ଆମକୁ ଏଠୁ ବିଦାୟ ଦିଅ ।"

ଅନ୍ନପୂର୍ଣ୍ଣା କିଛି ସମୟ ସ୍ତବ୍ଧ ଭାବରେ ଠିଆ ହୋଇ ଧୀରେ ଧୀରେ ସେଠୁ ଚାଲିଗଲେ ।

ସ୍କୁଲରୁ ଫେରି ଅମୂଲ୍ୟ ଖାଇଦେଇ ଖେଳିବାକୁ ଗଲା । ବନ୍ଦୁ ତାକୁ ପଦେହେଲେ କିଛି କହିଲାନି । ଖେଳପଡ଼ିଆରୁ ଭୈରବ ଆସି କହିଲା— ବିନା ଦୋଷରେ ନରେନ୍‌ବାବୁ ଅମୂଲ୍ୟକୁ ଚାପୁଡ଼ାଏ ମାରିଲେ ।

ବନ୍ଦୁ ବିରକ୍ତ ହୋଇ କହିଲା— ଯା' ଅପାଙ୍କୁ କହିବୁ ।

ସନ୍ଧ୍ୟାରେ ମାଧବ କଚେରିରୁ ଫେରି ସ୍ତ୍ରୀ ସହିତ ଟିକେ ଥଟ୍ଟା ପରିହାସ କରିବାକୁ ଗଲେ । ଥଟ୍ଟା ପରିହାସ କଣ କରିବେ—ଧମକ ଖାଇ ଚୁପ୍ ହୋଇଗଲେ । ଘରଭିତରେ ଯେ ଏତେସବୁ ଘଟଣା ଘଟିଯାଉଛି ଅନ୍ନପୂର୍ଣ୍ଣା ହିଁ କେବଳ ଜାଣନ୍ତି । ସେ ବନ୍ଦୁର ହାତ ଧରିପକାଇ କହିଲେ— ଯାହା ଦୋଷ କଲେ ବି ସେ ତୋର ପୁଅ । ଏଥର ତାକୁ କ୍ଷମାକର । ଏକୁଟିଆ ବେଳ ଦେଖି ତାକୁ ଧମକଚମକ ଦେବୁ ।

Digitized by srujanika@gmail.com

"ମୋ ପୁଅ ସେ ନୁହେଁ ବୋଲି ଦୁନିଆ ଜାଣେ । କାହିଁକି ମିଛଟାରେ ଏତେ କଥା ବଢ଼ କରି କହୁଛ କହିଲ ?"—ବନ୍ଦୁ କହିଲା ।

ଅନ୍ନପୂର୍ଣ୍ଣା କହିଲେ—"ମୁଁ ତାର ମା ନୁହଁ—ତୁ ତାର ମାଆ । ମୁଁ ତୋତେ ତାକୁ ପିଲାଟିଦିନରୁ ସମର୍ପି ଦେଇଛି ।"

"ଖୁଆଇ ପିଆଇ ଗ୍ରେଟରୁ ବଡ଼ କଲି । ତୁମ ପିଲା—ତୁମେ ତାକୁ ନିଅ । ମୋତେ ଏଥରକ ମୁକ୍ତ ଦିଅ ।"—କହି ବନ୍ଦୁ ସେଠାରୁ ଚାଲିଗଲା ।

ଘଡରେ କାନ୍ଦ କାନ୍ଦ ଅମୂଲ୍ୟ ଅନ୍ନପୂର୍ଣ୍ଣା ପାଖକୁ ଆସିଲା । ଅନ୍ନପୂର୍ଣ୍ଣା ସବୁ ବୁଝିପାରି ବିରକ୍ତ ହୋଇ କହିଲେ—ଏଠାକୁ କାହିଁକି ଆସିଛୁ ? ଯା ଏଠୁ କହୁଛି ।

ଅମୂଲ୍ୟ କିଛି ନକହି ଆସି ଦେଖିଲା, ବାପା ତାର ଶୋଇପଡ଼ିଲେଣି । ତେଣୁ ସେ କିଛି ନକହି ଆସ୍ତେ ଆସ୍ତେ ବାହାରକୁ ଚାଲିଗଲା ।

କଦମ୍ବ ସକାଳେ ଅଇଁଠାବାସନ ଉଠାଇଆଣି ବାରଣ୍ଡାରେ ଦେଖିଲା, ଅମୂଲ୍ୟ କାଠ ଓ ପଶି ଉପରେ ଶୋଇଛି । କଦମ୍ବ ତର ତର ହୋଇ ବନ୍ଦୁକୁ ଡାକିଆଣି ଏହା ଦେଖାଇଲା । ଅନ୍ନପୂର୍ଣ୍ଣା ବି ନିଦରୁ ଉଠି ଆସି ଦେଖିଲେ ।

ବନ୍ଦୁ ବଡ଼ କଠୋର ଭାବରେ କହିଲା—ଘଡରେ ପୁଅକୁ ମା ବୋଧେ ଘରୁ ଛଡ଼ିଦେଲେ । ପୁଅ ପାଖରେ ଶୋଇଲେ ବଡ଼ ଘରଣୀଙ୍କର ନିଦ ଭଲ ହେବନି ।

ପୁଅର ଅବସ୍ଥା ଦେଖି ଅନ୍ନପୂର୍ଣ୍ଣାଙ୍କ ଆଖିରେ ଲୁହ ଆସିଥିଲେ ବି ବନ୍ଦୁର ନିଷ୍ଠୁର ଉପହାର କଥାରେ ରାଗିଯାଇ ସେ କହିଲେ—ତୋର ଦୋଷ ମୋ ମୁଣ୍ଡରେ ଲଦିଦେଲେ ତୋର ରକ୍ଷା ।

ବନ୍ଦୁ ଅମୂଲ୍ୟକୁ ଉଠାଇ ଆସ୍ତୁ ଆସ୍ତୁ ଦେଖିଲା—ଦେହରେ ଜର ଅଛି । ସେ କାନ୍ଦ କାନ୍ଦ ସ୍ୱରରେ କହିଲା—କାର୍ତ୍ତିକ ମାସରେ ବାହାର ଶୀତ କାକରରେ ଶୋଇଲେ ଜର ତ ନିଶ୍ଚୟ ହେବ । ଏବେ ଜର ଭଲ ହେଲେ ଯାଇ ସେଉଁ କଥା ।

Digitized by srujanika@gmail.com

ଅନ୍ନପୂର୍ଣ୍ଣା କହିଲେ—ସତରେ କଣ ଜର ହୋଇଛି ? କାହିଁ ଦେଖି ?

ବନ୍ଧୁ ଅନ୍ନପୂର୍ଣ୍ଣାଙ୍କ ହାତକୁ ଛୁଆଡ଼ଦେଇ କହିଲ—ଦେଖି କଣ କରିବ ? ଏହା କହି ଅମୂଲ୍ୟକୁ କୋଳରେ ଧରି ଘରଭିତରକୁ ଚାଲିଗଲା ।

ପ୍ରାୟ ପାଞ୍ଚ ଛଅଦିନ ଭିତରେ ଅମୂଲ୍ୟର ଜର ଭଲହୋଇଗଲା । କିନ୍ତୁ ବଡ଼ଜାଆଙ୍କର ଅପରାଧଟା ବନ୍ଧୁ ମାର୍ଜନା କଲନାହିଁ । ସେହିଦିନରୁ ସେ ଅନ୍ନପୂର୍ଣ୍ଣା ସଙ୍ଗରେ ଭଲକରି କଥା କହିଲନି ।

ଅନ୍ନପୂର୍ଣ୍ଣା ସବୁ କଥା ବୁଝିଲେ ବି କିଛି ନକହି ନୀରବରେ ସହିଗଲେ । ସମସ୍ତଙ୍କ ନିକଟରେ ବନ୍ଧୁ ଯେ ତା ଉପରେ ଦୋଷ ଲଦିଦେଲା, ଏ କଥା ସେ ଭୁଲିପାରିଲେନି । ସେଇକଥା ସେ ଦିନେ ଏଲୋକେଶୀ ଆଗରେ କହିପକାଇଲେ—ଅମୂଲ୍ୟକୁ କଣ ଜ୍ୱର ହୋଇଥାନ୍ତା ? ସାନବୋହୂ ଲାଗି ଏତି ହେଲା !

ଏଲୋକେଶୀ ସଙ୍ଗେ ସଙ୍ଗେ ଭଲେଇ ହୋଇ ବନ୍ଧୁ ଆଗରେ ଏ କଥା ଫୋଡ଼ିଦେଲା । ବନ୍ଧୁ ସବୁ ଶୁଣିଲେ ବି କିଛିହେଲେ କହିଲନି କି କା ଆଗରେ ପ୍ରକାଶକଲନି । ବନ୍ଧୁ ବଡ଼ ଜାଆ ସାଙ୍ଗରେ ପୂରାପୂରି କଥାବାର୍ତ୍ତା ବନ୍ଦ କରିଦେଲା । ଏହା ଭିତରେ ପୁରୁଣା ଘରୁ ନୂଆ ଘରକୁ ସବୁ ଜିନିଷପତ୍ର ବୁହାଚାଲିଲା । କାଲି ସକାଳୁ ପୂରାପୂରି ନୂଆ ଘରକୁ ଚାଲିଯିବାକୁ ହେବ । ପିଲାମାନଙ୍କ ସହ ଯାଦବ ନୂଆ ଘରେ ଥିଲେ । ମାଧବ ମୋକଦ୍ଦମା କାମରେ ବାହାରକୁ ଚାଲିଯାଇଥିଲେ । ଏହି ସମୟରେ ଗୋଟାଏ ବଡ଼ କାଣ୍ଡ ଘରେ ଘଟିଗଲା । ମାଷ୍ଟର ମହାଶୟ ଅମୂଲ୍ୟକୁ ପଢ଼ାଇବାକୁ ସଂଧ୍ୟାରେ ଆସିଲେ । ବନ୍ଧୁ ତାଙ୍କୁ ଡକାଇ କହିଲ—କାଲିଠୁ ନୂଆ ଘରକୁ ଯାଇ ପଢ଼ାଇବେ ।

'ହେଉ'—ବୋଲି କହି ମାଷ୍ଟର ମହାଶୟ ଚାଲିଯାଉଥିଲେ । ବନ୍ଧୁ କହିଲ—ମାଷ୍ଟର ମହାଶୟ, ଏବେ ଅମୂଲ୍ୟ କେମିତି ପଢ଼ାପଢ଼ି କରୁଛି ?

"ଲେଖାପଢ଼ାରେ ଅମୂଲ୍ୟ ଭଲ । ପ୍ରତିଥର ତ ସେ ଶ୍ରେଣୀରେ ପ୍ରଥମ ହେଉଛି ।"

"ଭଲ ପଢ଼ୁଛି ଯେ—ହେଲେ ଏବେ ସିଗାରେଟ୍ ଖିଆ ଶିଖିଲାଣି ଯେ ।"

Digitized by srujanika@gmail.com

ମାଷ୍ଟର ମହାଶୟ ବସ୍ମିତ ହୋଇ କହିଲେ—ସିଗାରେଟ୍ ଖାଉଛ ? ତା'ପରେ କହିଲେ—ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ପିଲାମାନେ ଦେଖି, ଶିଖି ଅଭ୍ୟାସ କରନ୍ତି । ଆଚ୍ଛା, କାହାଠାରୁ ସିଗାରେଟ୍ ପିଆ ଶିଖିଲ ?

ବନ୍ଧୁ କହିଲା—ଏ କଥା ତା ବାପାଙ୍କ ଆଗରେ କହିବେ ।

—ହଁ ଜଣାଇବ । ହେଉଟି ଶୁଣନ୍ତୁ, ଏଇ ଗୁଡ଼ାଏ ପାଞ୍ଚଦିନ ତଳର କଥା । ସ୍କୁଲକୁ ଯିବା ବାଟରେ ଗୋଟିଏ ବଗିଚାରେ ପଶି ଅମ୍ବ ତୋଳି, ଡାଳ ଭାଙ୍ଗି, ମାଳୀକୁ ମାଡ଼ ମାରି ଗଣ୍ଡଗୋଳ ଭିଆଇଛନ୍ତି ।

ବନ୍ଧୁ ଡରିଯାଇ କହିଲା—ତା'ପରେ କଣ ହେଲା ?

—ମାଳୀ ଯାଇ ହେଡମାଷ୍ଟରଙ୍କ ଆଗରେ ଫେରାଦ ହେଲା । ହେଡ଼ମାଷ୍ଟର ସେମାନଙ୍କଠାରୁ ଦଶଟଙ୍କା ଜୋରିମାନା ଆଦାୟ କରି ତାକୁ ଦେବାରୁ ମାଳୀ ଟିକେ ଶାନ୍ତ ହେଲା ।

ବନ୍ଧୁ ଏ କଥା ବିଶ୍ୱାସ କରିପାରିଲା ନାହିଁ । ସେ କହିଲା—ଆମ ଅମୂଲ୍ୟ କଣ ସେମାନଙ୍କ ସାଙ୍ଗରେ ଥିଲା ? ସେ ଅବା ଟଙ୍କା ପାଇଲା କେଉଁଠୁ ?

—ସେ ଟଙ୍କା କେଉଁଠୁ ନେଲା କହିପାରିବିନି । ତେବେ ସେ ଦଳରେ ଅମୂଲ୍ୟ ଓ ଆପଣଙ୍କ ଭଣଜା ନରେନ୍ ବି ଥିଲା । ସ୍କୁଲର ଆଉ ଚାରି ପାଞ୍ଚଜଣ ଦୁଷ୍ଟ ପିଲା ଥିଲେ ।

ବନ୍ଧୁ କହିଲା—ଟଙ୍କା ଆଦାୟ ହୋଇଛି ?

—ହଁ, ଏମାନେ ଦେଇସାରିଛନ୍ତି ।

—ହଉ ଆପଣ ଯାଆନ୍ତୁ ।

ଶିକ୍ଷକ ଯିବା ପରେ ବନ୍ଧୁ ଦଣ୍ଡେ ଗୁମ୍ମାରି ବସିରହିଲା । ତା' ମୁହଁରୁ ଅଜାଣତରେ ବାହାରିଆସିଲା—ମୋତେ ନଜଣାଇ ତାକୁ ଏ ଘରେ କିଏ ଟଙ୍କା ଦେଲା ? କାର ଏତେ ବଡ଼ ସାହସ ? ପ୍ରଥମରେ ତା ମନ ଖରାପ—ଦ୍ୱିତୀୟରେ ସେ ତାର ବଡ଼ ଜୀଆ ସଙ୍ଗେ କଥାବାର୍ତ୍ତା

Digitized by srujanika@gmail.com

ବ ହେଉନ । ଶେଷରେ ଏ ସମ୍ବାଦ ଶୁଣି ସେ ଆହୁରି ରାଗିଗଲ । ସେ ବେଗରେ ଉଠିଯାଇ ସୋପେଇ ଘରେ ଅନ୍ନପୂର୍ଣ୍ଣାଙ୍କୁ କହିଲ—ତୁମେ ଏହା ଭିତରେ ଅମୂଲ୍ୟକୁ ଟଙ୍କା ଦେଇଛ କି ?

ସେଇ ଆଶଙ୍କା ଅନ୍ନପୂର୍ଣ୍ଣା କରିଥିଲେ । ସେ ଭୟଭୀତ ହୋଇ କହିଲେ—ତୋତେ ଏ କଥା କିଏ କହିଲା ?

—ସେ କଥା ମୁଁ ତୁମକୁ ପଚାରୁନି । ସେ ତୁମଠୁ କେଣ କହି ଟଙ୍କା ନେଲ ? ଆଉ ତୁମେ ବା କେମିତି ଦେଲ ?

ଅନ୍ନପୂର୍ଣ୍ଣା କିଛି ନକହି ଚୁପ୍ ହୋଇ ରହିଲେ । ବନ୍ଧୁ କହିଲ—ତୁମେ ବୁଝୁଛ ମୁଁ ତାକୁ ଶାସନ ନକରେ—ସେଥିପାଇଁ ଏକଥା ଲୁଚେଇଛ । ଅନ୍ୟ ଯାହା କରୁ ପଛକେ ଗୁରୁଜନଙ୍କ ଆଗରେ ମିଛ କଥା କହିବନି । ତୁମେ ଜାଣିଶୁଣି ତାକୁ ପ୍ରଶ୍ରୟ ଦେଉଛ ।

ଅନ୍ନପୂର୍ଣ୍ଣା ଧୀରେ ଧୀରେ କହିଲେ—ସତ କଥା । ତେବେ ଏଇ-ଥରକ ତାକୁ କ୍ଷମା କର । ତୋ ପାଖରେ ମୁଁ ଭିକ ମାଗୁଛି ।

ବନ୍ଧୁର ଛାତିଭିତରଟା ପୋଡ଼ିଯାଉଥିଲ । ସେ କହିଲ—ଥରେ କଣ —ଅନେକ ତାକୁ ସବୁଦିନ ପାଇଁ କ୍ଷମା କରିଦେଲ । ତାକୁ ଆଉ ପଦେ-ହେଲେ କହିବନି । ମୋ ଆଖି ଆଗରେ ସେ ଉଚ୍ଛନ୍ନ ହୋଇଯିବ, ଏ କଥା ମୁଁ ସହିପାରିବନି । କିନ୍ତୁ ତୁମର କି ସାହସ ?

ଶେଷ କଥ ତକ ଅନ୍ନପୂର୍ଣ୍ଣାଙ୍କୁ ଭାରି ବାଧିଲେ ବି ସେ କିଛିହେଲେ କହିଲେନି । ବନ୍ଧୁ ପୁଣି କହିଲ—ସବୁ କଥାରେ ତମେ ଭଲେଇ ହୋଇ କହୁଚ—ଏଇ ଥରଟା ତାକୁ କ୍ଷମା ଦେ । କିନ୍ତୁ ଦୋଷ ତାର ନୁହେଁ, ତୁମର । ତୁମକୁ ମୁଁ କ୍ଷମା କରିବନି ।

ଘରର ଚାକରବାକର ସମସ୍ତେ ଶୁଣୁଥିଲେ । ଅନ୍ନପୂର୍ଣ୍ଣା ଏଥର ରାଗିଯାଇ କହିଲେ—କଣ ଫାଶୀ ଦେବୁ ନା କଣ ?

ବାରୁଦରେ ନିଆଁ ଲଗିଲ ଭଳି ବନ୍ଧୁ ରାଗିଯାଇ କହିଲ—ହଁ, ତାହା ହିଁ ତୁମର ଉପଯୁକ୍ତ ଶାସ୍ତି ।

Digitized by srujanika@gmail.com

—ନିଜ ପୁଅକୁ ଦୁଇଟଙ୍କା ଦେଇଛୁ—ଏଇଟା ଏତେବଡ଼ ଅପରାଧ ହୋଇଗଲା ?

କେଉଁ କଥା ଆଲୋଚନା ହେଉ ହେଉ ଆସି କେଉଁଠି କଥା ପଡ଼ିଗଲା । ଅସଲ କଥାଟା ଭୁଲିଯାଇ ବନ୍ଧୁ କହିଲା—ତମେ ବା କାହିଁକି ବିନା କାରଣରେ ତାଙ୍କୁ ଟଙ୍କା ଦେବ ? ଟଙ୍କା ବଦ୍‌ଖର୍ଚ୍ଚ କରିବାକୁ କେଉଁଠୁ ଆସେ ?

ଅନ୍ନପୂର୍ଣ୍ଣା କହିଲେ—ତୁ କ'ଣ ଟଙ୍କା ବଦ୍‌ଖର୍ଚ୍ଚ କରୁନାହୁଁ ?

ବନ୍ଧୁ କହିଲା—କଲେ ମୋ ଟଙ୍କା ନଷ୍ଟ କରୁଛି । ତମେ କାର ଟଙ୍କା ନଷ୍ଟ କରୁଛ ଶୁଣେ ?

ଏଥରକ ଅନ୍ନପୂର୍ଣ୍ଣା ଭୟଙ୍କର ଭାବରେ ରାଗିଗଲେ । ଅନ୍ନପୂର୍ଣ୍ଣା ଗରିବ ଘରର ଝିଅ ଥିଲା । ସେ ଭାବିଲା ବନ୍ଧୁ ତାଙ୍କୁ ତା'ର ବାପଘରର ଦରିଦ୍ରତାକୁ ପରିହାସ କରୁଛି । ସେ ଉଠିପଡ଼ି କହିଲେ—ହଉ ହେଲା ଏବେ, ତୁ ଖୁବ୍ ବଡ଼ଲୋକ ଘର ଝିଅ । ମୁଁ ଗରିବଘର ଝିଅ ବୋଲି କ'ଣ ଦୁ'ଟଙ୍କା ଦେଇ-ପାରିବନି ? ସେ ଅହଙ୍କାର କରନା ।

ବନ୍ଧୁ କହିଲା—ସେ ଅହଙ୍କାର କରୁନି । କିନ୍ତୁ ଚନ୍ଦ୍ରାକର ଦେଖ, ଯଦି ପଇସାଟିଏ ଖର୍ଚ୍ଚ କରୁଛ ତେବେ ସେ କାହାର ଟଙ୍କା ।

ଅନ୍ନପୂର୍ଣ୍ଣା ଉଚ୍ଚସ୍ୱରରେ କହିଲେ—କାହାର ଟଙ୍କା ? ତୋ ମନକୁ ଯାହା ଆସୁଛି ତା କହିଯାଉଛୁ । ମୋ ସାମନାରୁ ଚାଲିଯା ।

ବନ୍ଧୁ କହିଲା—"ରାଗ ପାଇଲେ ଚାଲିଯିବି । କିନ୍ତୁ ତମେ କାହାର ପଇସା ଖର୍ଚ୍ଚ କରୁଛ, କାହା ରୋଜଗାରରେ ଚଳୁଛ, ସେକଥା କ'ଣ ଜାଣେନାହିଁ ।" କହୁ କହୁ କ'ଣ ଯେ ସେ କହିଦେଲା, ହଠାତ୍ ସେ ସ୍ତବ୍ଧ ହୋଇଗଲା ।

ଅନ୍ନପୂର୍ଣ୍ଣା ଗମ୍ଭୀର ହୋଇଗଲେ । ତାଙ୍କର ମୁହଁ ଶୁଖିଗଲା । ସେ ତା'ପରେ କହିଲେ—ହଁ, ତୋ ସ୍ୱାମୀର ରୋଜଗାରରୁ ଖାଉଛୁ, ପିନ୍ଧୁଛୁ । ମୁଁ ତୋର ଚାକରାଣୀ ଆଉ ମୋ ସ୍ୱାମୀ ତୋର ଚାକର । ତୋ ମନକଥା ଏଇଆ ତ ? ଏ କଥା ଏତେଦିନ ପର୍ଯ୍ୟନ୍ତ କହିନଥିଲ କାହିଁକି ?

Digitized by srujanika@gmail.com

ତାଙ୍କ ଓଠ ଥରିବାକୁ ଲାଗିଲା । ସେ ଦାନ୍ତ କାମୁଡ଼ି କହିଲେ—"ତୁ ଆଜି ପର୍ଯ୍ୟନ୍ତ କୁଆଡ଼େ ଥିଲୁ ? ଯେତେବେଳେ ସାନଭାଇକୁ ପଢ଼ାଇବା ପାଇଁ କେତେ କଷ୍ଟ କରିଛନ୍ତି ସେତେବେଳେ କୁଆଡ଼େ ଥିଲୁ ? ତା'ଲାଗି ସେ ଦି'ଖଣ୍ଡ ଲୁଗା ଏକାବେଳକେ ବ୍ୟବହାର କରିପାରିନାହାନ୍ତି । ଯେତେବେଳେ ଘର ଆମର ପୋଡ଼ିଗଲା, ଗଛତଳରେ ଆଶ୍ରୟ ନେଇ ଓଳିଏ ଖାଇ ଓଳିଏ ଉପବାସ ରହି ଏହି ଭିଟାମାଟିକୁ ରକ୍ଷା କରିଛନ୍ତି, ସେତେବେଳେ ତୁ କୁଆଡ଼େ ଥିଲୁ ?"

କହୁ କହୁ ତାଙ୍କ ଆଖିରୁ ଝର ଝର କରି ଲୁହ ବୋହିପଡ଼ିଲା । ସେ ଯଦି ତୁମମାନଙ୍କ ମନ କଥା ଜାଣିଥାନ୍ତେ, ତା'ହେଲେ ସେ ଅଫିମ ଖାଇ ଏମିତି ଆରାମରେ ଦିନ କାଟୁନଥାନ୍ତେ । ଆଜି ମତେ ଦେଖାଇ ତୁ ତାଙ୍କୁ ଅପମାନ ଦେଲୁ । ସ୍ୱାମୀର ଅପମାନରେ ଅନ୍ନପୂର୍ଣ୍ଣାର ହୃଦୟ ଫାଟିପଡ଼ିଲା । ସେ କହିଲା — ଭଲ ହେଲା, ଠିକ୍ ସମୟରେ ସୂଚନା ଦେଲୁ । ସତେ ଆତ୍ମହତ୍ୟା କରିଥିଲା । ମୁଁ ଘଣ ପକାଉଛୁ—ପରଘରେ ଖଟି ଖାଇବ ପଛକେ, ତୁମ ରୋଜଗାରକୁ ଆଉ ଛୁଇଁବି ନାହିଁ ।

ଏହି ସମୟରେ ଯାଦବ ଦୁଆରକୁ ଆସି ଡାକିଲେ—କୁଆଡ଼େ ଗଲ କି ବଡ଼ବୋହୂ ?

ସ୍ୱାମୀଙ୍କ ପାଟି ଶୁଣି ତାଙ୍କର ଅଭିମାନଭରା ହୃଦୟ ଝଡ଼ କ୍ଷୁବ୍ଧ ସାଗରର ତରଙ୍ଗ ଭଳି ଫୁଲିଉଠିଲା । ସେ ବାହାରକୁ ଯାଇ ସ୍ୱାମୀଙ୍କୁ ଉଦ୍ଦେଶ୍ୟ କରି କହିଲେ—ଯିଏ ନିଜର ସ୍ତ୍ରୀ, ପିଲାପିଲିଙ୍କୁ ପୋଷିପାରେନା ସେ ଗଳାରେ ଦଉଡ଼ି ଦେଇ ମରିବା ଭଲ ।

ଯାଦବ ଆଶ୍ଚର୍ଯ୍ୟ ହୋଇ କହିଲେ—କ'ଣ ହେଲା କି ?

—କ'ଣ ଆଉ ହେବ ? ସାନବୋହୂ ଆଜି ଖୋଲାଖୋଲି କହିଦେଲା ଯେ ମୁଁ ତା'ର ଦାସୀ, ଆଉ ତୁମେ ତା'ର ଚାକର ।

ଘରଭିତରେ ଥାଇ ବିନୁ ଏକଥା ଶୁଣି ଜିଭ କାମୁଡ଼ିପକାଇଲା ।

ଅନ୍ନପୂର୍ଣ୍ଣା କାନ୍ଦି କାନ୍ଦି କହିଲେ—ପଇସାଟିଏ ହାତଟେକି ଦେବାର ଅଧିକାର ମୋର ଏ ଘରେ ନାହିଁ । ତମେ ବସି ଥାଉଁଥାଉଁ ଆଜି ମତେ ଏ

Digitized by srujanika@gmail.com

କଥା ଶୁଣିବାକୁ ହେଲା । ତମ ଆଗରେ ଠିଆହୋଇ ଶପଥ କରୁଛି—ସେମାନଙ୍କ ରୋଜଗାରରେ ଚଳିବା ପୂର୍ବରୁ ଆମ ଦୁଇଜଣଙ୍କର ଯେପରି ମରଣ ହେଉ ।

ବନ୍ଦୁର ଅବରୁଦ୍ଧ କର୍ଣ୍ଣରେ ଏ କଥା ସତେ ଯେପରି ଅସ୍ପଷ୍ଟ ଭାବରେ ପ୍ରବେଶ କଲା । ସେ କ୍ଷୀଣ ସ୍ୱରରେ କହିଲା—ତମେ କ'ଣ କଲ ଅମା ? ସେ ସେଇକଥା କହି ବାରବର୍ଷ ତଳର ମୂର୍ଚ୍ଛାବେଗରେ ପୁଣି ଥରେ ମୂର୍ଚ୍ଛା ହୋଇ ତଳେ ପଡ଼ିଗଲା ।

## ସାତ

ଯାଦବ, ଅନ୍ନପୂର୍ଣ୍ଣା ଓ ଅମୂଲ୍ୟ ଛଡ଼ା ନୂଆଘରକୁ ବାକି ସମସ୍ତେ ଅସିଲେ । ଘରପ୍ରତିଷ୍ଠାକୁ ବନ୍ଦୁର ବାପଘରୁ ତା'ର ବାପା, ବୋଉ, ତା' ପିଉସୀ ଇତ୍ୟାଦି ସମସ୍ତେ ଆସିଥିଲେ । ନୂଆ ଘରକୁ ଆସିଲାଦିନ ବନ୍ଦୁକୁ ଟିକେ ଖରାପ ଲାଗିଲା । କିନ୍ତୁ ତା' ପରଦିନ ସେ-ଭାବ କଟିଗଲା । ରାଗ କଟିଗଲେ ଅନ୍ନପୂର୍ଣ୍ଣା ଯେ ଆସିବେ ଏକଥା ବନ୍ଦୁର ତିଳେହେଲେ ସନ୍ଦେହ ନଥିଲା । ଘରପ୍ରତିଷ୍ଠାର ଭୋଜିଭାତ ପାଇଁ ସେ ବ୍ୟସ୍ତ ରହିଥିଲା ।

ବନ୍ଦୁର ବାପା କହିଲେ—ମା' ବନ୍ଦୁ, ତୋ ପୁଅକୁ ତ କାହିଁ ଦେଖୁନି ?

ବନ୍ଦୁ କହିଲା—ସେ ପୁରୁଣାଘରେ ଅଛି ।

ବନ୍ଦୁର ମାଆ କହିଲେ—ତୋ ଜାଆ କ'ଣ ଆଉଘରେ ରହିଛନ୍ତି ନା କ'ଣ ?

ହଁ, ସେ ଅସିନାହାନ୍ତି ।

ମା' କହିଲେ—ସତ କଥା । ସମସ୍ତେ ଚାଲିଅସିଲେ ସେ ପୈତୃକ ସମ୍ପତ୍ତି ଓ ପୁରୁଣାଘରେ ରହିବ କିଏ ? ତା'ର ତ ପୁଣି ରକ୍ଷଣାବେକ୍ଷଣ ଦରକାର ।

Digitized by srujanika@gmail.com

କିଛି ନକହି ବିନ୍ଦୁ ତା କାମରେ ଚାଲିଗଲା ।

ଯାଦବ ଏହି କେଇଦିନ ହେଲା ନିତି ସଞ୍ଜରେ ନୂଆ ଘରପୋଖରୀକୁ ଆସନ୍ତି । ବାରଣ୍ଡାରେ ବସି ଘରର ଭଲ-ମନ୍ଦ ବୁଝି ଚାଲିଯାଆନ୍ତି । ଘର-ଭିତରକୁ କିନ୍ତୁ ଯାଆନ୍ତି ନାହିଁ । ଘର ପ୍ରତିଷ୍ଠା ପୂର୍ବଦିନ ସେ ଆସି ଏକୋକେଶୀ ସଙ୍ଗରେ ସବୁ କଥା ବୁଝାବୁଝି କରୁଥିଲେ । ବିନ୍ଦୁ କବାଟ କଣରେ ରହି ସବୁ ଶୁଣୁଥିଲା । ଦେଢ଼ଶୁରଙ୍କଠାରୁ ସେ ବାପାର ଆଦର ଯତ୍ନ ପାଉଛି । ସେ ସ୍ନେହରେ ତାକୁ ମାଆ ବୋଲି ଡାକନ୍ତି—କେବେ ବୋହୂ ବୋଲି ଡାକନାହାନ୍ତି । ଦେଢ଼ଶୁରଙ୍କ ନିକଟରେ ବଡ଼ ଜାଆଙ୍କ ନାଆଁରେ ସେ କେତେ କଥା ନାଲିସ୍ କରିଛି । କେବେ ଉପେକ୍ଷିତ ସେ ହୋଇନି । ଆଜି କିନ୍ତୁ ଅପରିସୀମ ଲଜ୍ଜାରେ କିଛି କହିପାରିଲାନି ।

ଯାଦବ ଚାଲିଗଲେ । ବିନ୍ଦୁ ଘରଭିତରେ ନିଭୃତରେ କାନ୍ଦିବାକୁ ଲାଗିଲା । କାଲେ କିଏ ଶୁଣିବ !

ସେଦିନ ଘରପ୍ରତିଷ୍ଠା । ଗୃହଅଡ଼େ ଧୂମ୍‌ଧାମ୍ କାମ ଚାଲିଛି । ବିନ୍ଦୁ ସ୍ୱାମୀଙ୍କୁ ଡାକି କହିଲା—ବେଳ ଗଡ଼ିଯାଉଛି । ପୁରୋହିତ ଆସି ବସିଲେଣି । ଏ ପର୍ଯ୍ୟନ୍ତ ସେ ଦେଢ଼ଶୁର ଆସିଲେ ନାହିଁ ।

ମାଧବ ଆଶ୍ଚର୍ଯ୍ୟ ହୋଇ କହିଲା—ସେ କାହିଁକି ଆସିବେ ?

ବିନ୍ଦୁ ବିସ୍ମୟ ପ୍ରକାଶ କରି କହିଲା—ଏ କି କଥା କହୁଛ ? ତାଙ୍କ ବିନା ଏ ସବୁ ଶୁଭ କାମ କ'ଣ ହୋଇପାରିବ ? ସେ ପରା ଘରର କର୍ତ୍ତା ।

ମାଧବ କହିଲେ—ମୁଁ ନହେଲେ ଭଣୋଇ ପ୍ରିୟନାଥ କାମ ଚଳେଇ-ଦେବୁ । ଭାଇ ଆସିପାରିବେନି ।

ବିନ୍ଦୁ ରାଗିଯାଇ କହିଲା—ଆସିପାରିବେନି କହିଲେ ହେବ ? ସେ ଥାଉଁଥାଉଁ କର୍ମ ଉପରେ ଆଉ କିଏ ବସିବ ? ସେକଥା ହୋଇପାରିବନି । ତାଙ୍କ ବିନା ଏ ସବୁ ଶୁଭ କାମ କେବେ ହୋଇପାରିବନି ।

ମାଧବ କହିଲେ—ହଉ, ତେବେ ବନ୍ଦ ରହୁ । ସେ ତ ଘରେ ନାହାନ୍ତି ।

Digitized by srujanika@gmail.com

—"ଏ ସବୁ ବଡ଼ ଜାଆଁଙ୍କର ବଡାଣ୍ଡରେ ହୋଇଛୁ । ତେବେ ଦେଢ଼ଶୁର ଆସିବେନ !"—ଏହା କହି ସେ କାନ୍ଦ କାନ୍ଦ ସେଠୁ ଚାଲିଗଲା । ତା'ପରେ ପରେ ପୂଜା ପର୍ବ, ବ୍ରତଭୋଜ, ଶଙ୍ଖ ହୁଳହୁଳି ସବୁ ଆପଣା-ଛାଏଁ ବନ୍ଦ ହୋଇଗଲା । ବନ୍ଦୁ ଭାବୁଥିଲା ଅନ୍ନପୂର୍ଣ୍ଣାଙ୍କର ପୂଜା ମାତ୍ର ଗୋଟିଏ ଦିନର । ସେ ଭାବିଥିଲା—ଆଜି ନିଶ୍ଚୟ ଦେଢ଼ଶୁର, ଜାଆ, ଅମୂଲ୍ୟ ସମସ୍ତେ ଆସିବେ । ସେତେ ସବୁ ଆୟୋଜନ କରୁଥିଲା କେବଳ ସେମାନେ ଆସିବେ ବୋଲି । ସେମାନେ ନ ଆସିବାରୁ ତା'ର ସବୁ ଉତ୍ସବ ଗୋଟିଏ ମୁହୂର୍ତ୍ତରେ ବନ୍ଦ ହୋଇଗଲା ।

ଏଲୋକେଶୀ ଆସି କହିଲା—ସାନବୋହୂ, ଭଣ୍ଡାରଘରର କ୍ୟବସ୍ଥା ଦିଅ । ଗୁଡ଼ିଆ ସନ୍ଦେଶ ନେଇ ଆସିଛି—ରଖିବ ।

ବନ୍ଦୁ କହିଲା—ଏଠି କେଉଁଠି ରଖିଦିଅ ।

—କେଉଁଠି ରଖିବ ? କୁଆ ଖାଇବ ଯେ ।

—"ତେବେ ସେ ସବୁ ଫିଙ୍ଗିଦିଅ"—କହି ସେ ସେଠାରୁ ଉଠି ଚାଲିଗଲା ।

ପିଉସୀ ଆସି କହିଲେ—ମା' ବନ୍ଦୁ, କେତେ ମଇଦା ଦଳିବ ଠିକେ କହିଦେଇ ଯା ।

—କେତେ ଯେ ଦଳିବ ମୁଁ କ ଜାଣେ ! ତମେ ସବୁ ଅଭିଜ୍ଞ ଘରଣୀ । ମତେ କ'ଣ କହୁଛ ?

ପିଉସୀ ଆଶ୍ଚର୍ଯ୍ୟ ହୋଇ କହିଲେ—ଏ କି କଥା ? ତୁମ ଘରେ କେତେ ଲୋକ ଖାଇବେ ମୁଁ କିମିତି ଜାଣିବି ?

ବନ୍ଦୁ ରାଗିଯାଇ କହିଲା—"ତେବେ ତାଙ୍କୁ ଯାଇ ପଚାର । ମୋ ଅପା ତ ଜଣେ ଘରଣୀ । ଅମୂଲ୍ୟର ବ୍ରତ ବେଳରୁ କେତେଲୋକ ଖାଇଲେ ଠିକଣା ପର୍ଯ୍ୟନ୍ତ । ଅରେ ହେଲେ ସେ ମୋତେ ପଚାରିଛ ନା—ବନ୍ଦୁ, ତୁ ଏଇଟା କରିଦେ । ସେଇଟା କରିଦେ । ତାଙ୍କ କାମ ଆଗରେ ଏ ଘରେ ଯେତେଯାବୁ ସ୍ତ୍ରୀ ଲୋକ ଅଛ କେହି ତାଙ୍କ ପାଖରେ ସରିହେବ ?"

ଏହା କହି ସେ ଚାଲିଯାଉଥିଲା । କଦମ୍ବ ଆସି କହିଲା, "ବାବୁ କହୁଛନ୍ତି

ପୂଜା ଲୁଗାପଟା”—ତା କଥା ଶେଷ ନହେଉଣୁ ବନ୍ଦୁ ପାଟିକରି କହିଲା, “ମତେ ସମସ୍ତେ ମିଳି ମିଶି ଖାଇବ ନା କ’ଣ ? ଚାଲ୍ ଯା ମୋ ଆଗରୁ ।”

କଦମ୍ବ ବ୍ୟସ୍ତ ହୋଇ ଚାଲିଗଲା ।

କିଛି ସମୟ ପରେ ମାଧବ ଆସି କହିଲା—କୁଆଡ଼େ ଗଲ ? ଆଗୋ ଶୁଣୁଛ ?

ବନ୍ଦୁ ପାଖକୁ ଆସି କହିଲା—“ନା, ଶୁଣିପାରୁନି । ମୁଁ ଶୁଣିବା ଦରକାର ନାହିଁ—ହେଲା ତ ।” ମାଧବ ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲା । ବନ୍ଦୁ କହିଲା—“କ’ଣ କରିବ କହୁଛ ? ମୋ ଗଳାରେ ଫାଶଦେବ ତ ? ଦିଅ ।”—କହି କହି କାନ୍ଦି କାନ୍ଦି ଦ୍ରୁତ ପଦରେ ସେଠାରୁ ଚାଲିଗଲା । ଏମିତି ବେଳ ବି ଗଡ଼ିବାକୁ ଲାଗିଲା ।

ବନ୍ଦୁ ଏମିତି କିଛି କାମ ନକରି, ସ୍ୱାମୀ ତା’ର ଦୋଷ ଦେଇ, କିଛି କାମ ନକରି, ଏ ଘର ସେ ଘର କେବଳ ଖାଲି ଯା-ଆସ କଲା । କେହି ଜଣେ ବାସନକୁସନ ପିଣ୍ଡା ଉପରେ ରଖିଥିଲା । ବନ୍ଦୁ ତାକୁ ଗୋଇଠାମାରି ତଳକୁ ଫିଙ୍ଗିଦେଇ କହିଲା—“ଯା-ଆସ ବାଟରେ ଅଇଁଠା ବାସନ କ’ଣ ରଖାଯାଏ ?” ଯାଉଁ ଯାଉଁ ତା ମୁହଁରେ ଓଦା ଲୁଗା ଉଡ଼ିଆସି ପଡ଼ିଗଲା । ବନ୍ଦୁ ତାକୁ ଟିକି ଟିକି କରି ଚିରିଦେଇ କହିଲା—“ଏମିତି ଜାଗାରେ ସବୁ ଲୁଗା ଶୁଖାଯାଏ ?” ଭୟରେ ତା ଆଗକୁ କେହି ସେ ସମୟରେ ଆସିଲେ ନାହିଁ ।

ପୁରୋହିତ ବିଚରା ନଜେ ବନ୍ଦୁ ପାଖକୁ ଆସି କହିଲେ—ବେଳ ଗଡ଼ିଯାଉଛି । କିଛି ତ ଯୋଗାଡ଼ ହୋଇନି ଦେଖୁଛି ।

ଆଖି ଆଳରେ ଥାଇ ବନ୍ଦୁ କହିଲା—“ଉତ୍ସବ ପର୍ବରେ ଏମିତି ବେଳ ଗଡ଼ିଯାଏ ଆଜି କ’ଣ ନୂଆ କଥା ।” ଏହା କହି ଅଗଣାରେ ଥିବା ପାଣି ଗରାକୁ ଗୋଡ଼ରେ ଠେଲିଦେଇ ଆଉ ଗୋଟିଏ ଘରେ ଯାଇ ଚଟାଣରେ ବସିପଡ଼ିଲା । ପ୍ରାୟ ଦଶ ମିନିଟ୍ ପରେ ହଠାତ୍ ତା କାନରେ ଏକ ପରିଚିତ କଣ୍ଠସ୍ୱର ବାଜିଲାମାତ୍ରେ ସେ ଧଡ଼ପଡ଼ କରି ଉଠି ବସିପଡ଼ି ଦେଖିଲା ଅନ୍ନପୂର୍ଣ୍ଣା ଅଗଣାରେ ଆସି ଠିଆହୋଇଛନ୍ତି । ତାଙ୍କୁ ଦେଖି

Digitized by srujanika@gmail.com

ରାଗ ଓ ଅଭିମାନରେ ବନ୍ଦୁ ଭେ ଭେ ହୋଇ କାନ୍ଦି କହିଲା—"ଦିନ ଏଗାରଟା ଆସି ବାଜିଲାଣି ଆଉ କେତେ ଶହୁଡ଼ା କରିବ ? ମୁଁ ଯଦି ବିଷ ପିଇ ମରିବି ତେବେ ମୋତେ ବିଷ ଆଣିଦିଅ । ମୁଁ ତମର ଆଗରେ ପିଇ ମରିବି ।" ଏହା କହି କାନରୁ ସୁନାବ ପେନ୍ଥାଟା ଫିଟାଇ ତାଙ୍କ ପାଖରେ ଫୋପାଡ଼ିଦେଇ ଯାଇ ଘରେ କବାଟ କିଲି କଣ୍ଟି କରି ହୋଇ କାନ୍ଦିବାରେ ଲାଗିଲା ।

ଅନ୍ନପୂର୍ଣ୍ଣା ସୁନାବ ପେନ୍ଥା ନେଇ ଭଣ୍ଡାରଘରକୁ ଚାଲିଗଲେ ।

× × × ×

ଉପରବେଳାକୁ ଲୋକଙ୍କର ଭିଡ଼ କମିଯାଇଥିଲା । ବନ୍ଦୁ ଖାଲି ଏ ଘର ସେ ଘର ବୁଲୁଥିଲା । ଭୈରବ ଆସି କହିଲା—ମା' ଅମୂଲ୍ୟବାବୁ ସ୍କୁଲରେ ନାହାନ୍ତି । ବନ୍ଦୁ ଭୈରବ ଆଡ଼କୁ ରାଗରେ ଚାହିଁ କହିଲା—ହତଭାଗା । ପିଲାମାନେ କ'ଣ ସ୍କୁଲରେ ରାତି ପର୍ଯ୍ୟନ୍ତ ରହନ୍ତି ? ତୁ କ'ଣ ନୂଆ ଲୋକ ନା କ'ଣ ? ଆମ ଘରେ ଥିବ ।

—ସେଠି ବି ନାହାନ୍ତି ।

ବନ୍ଦୁ ପାଟିକରି କହିଲା—ସେ କୋଉ ଗ୍ରେଟଲୋକ ପିଲାଙ୍କ ସାଙ୍ଗରେ ଡାବଲପୁଅ ଖେଳୁଥିବ । ତା'ର କ'ଣ ଆଉ ଭୟ ନା ଭ୍ରାନ୍ତି ଅଛି । ଡାବଲପୁଅ ଖେଳ ତା ଆଖି ଗୋଟିଏ ଫୁଟିଲେ ଅପାର ମନୋବାଞ୍ଛା ପୂର୍ଣ୍ଣହେବ । ଯା ସେଉଁଠି ଅଛି ଖୋଜିଆଣିବୁ ।

ଅନ୍ନପୂର୍ଣ୍ଣା ବନ୍ଦୁର ପାଟି ଶୁଣିପାରିଲେ ।

ଘଣ୍ଟାଏ ପରେ ଭୈରବ ଫେରିଆସି କହିଲା—ଅମୂଲ୍ୟବାବୁ ପ୍ରଭୁଣା-ଘରେ ଅଛନ୍ତି—ଆସିଲେ ନାହିଁ ।

ବନ୍ଦୁ ଏକଥା ବିଶ୍ୱାସ କରିପାରିଲା ନାହିଁ । କହିଲା—କ'ଣ କହିଲୁ ? ସେ ଆସିଲାନି ? ମୁଁ ଡାକୁଛି ବୋଲି ତାକୁ କହିଲୁ ତ ?

—ହଁ, ତାଙ୍କୁ କହିଲି । ତେବେ ପୁଣି ସେ ଆସିଲେନି ।

Digitized by srujanika@gmail.com

ଟିକଏ ରହି କହିଲା—ତା'ର ଅବା ଦୋଷ କଣ ? ଯେମିତ ମାଲୁ ସେମିତ ପୁଅ । ମୋର ସ୍ୱଣ ରହିଲା । ସତ କହୁଛ—ମା' ପୁଅଙ୍କର ମୁହଁ ଆଉ ଗ୍ୱହିଁବନ ।

କାମଦାମ ସାର ଅନେକ ରାତରେ ଯେତେବେଳେ ଅନ୍ନପୂର୍ଣ୍ଣ ପୁରୁଣା ଘରକୁ ବାହାରଲେ, ମାଧବ ତାଙ୍କୁ ଛାଡ଼ିଆସିବାକୁ ବାହାରଲା । ବନ୍ଦୁ ଦୌଡ଼ିଆସି କହିଲା—ଲୋକର ଅକଲ ଦେଖ । ଅପା ଆମଘରେ ଜଲ ଦନି କଟେଇନ ସେକଥା ନଜାଣି ତାଙ୍କୁ ଛାଡ଼ିବାକୁ ବାହାରଲଣି ।

ମାଧବ କହିଲା—ସେକଥା ତୁମେ ଜାଣିବା କଥା—ମୋର କ'ଣ ଅଛି ? ଯେତେବେଳେ ଏଡ଼େବଡ଼ ଉତ୍ସବ ପଣ୍ଡହେବାକୁ ବସିଥିଲା, ସେତେବେଳେ ବାଧ ହୋଇ ଯାଇ ନଜେ ଡାକଆଣିଥିଲ । ଏବେ ନଜେ ଛାଡ଼ିବାକୁ ଯାଉଛି ।

ବନ୍ଦୁ କହିଲା—ଦେଖୁଛ ତୁମେ ବ ସେମାନଙ୍କ ପଟର ।

ମାଧବ ଏକଥାର ଜବାବ ନଦେଇ କହିଲା—ଗ୍ୱଲ ଖାଉଜ ।

"ହଉ ଚ୍ୱଲ"—ବୋଲ କହ ଅନ୍ନପୂର୍ଣ୍ଣା ପାଦ ବଢ଼େଇବାରୁ ବନ୍ଦୁ ଗର୍ଜନ କର କହିଲା—"ମିଛରେ ଲୋକେ କହନ୍ତି ଜାଆ ଲୁହେଁ ଭଗାର । ମନକୁ ଯାହା ପାଇଲା ଦଶପଦ ମିଛ ସତ କର କହିଲା । ସ୍ୱଣ ପକାଇ ରହିଲା । ସ୍ୱରଦନ ହେଲା ପୁଅକୁ ଏଠାକୁ ପଠାଇଲେନ କ ମୁହଁ ତା'ର ଦେଖିଲନ । ଭଗବାନ ଏହାର ବସ୍ତୁର କରବେ ।"

ଏହା କହ କାନ୍ଦ କାନ୍ଦ ଆସି ସ୍ୱୋଷେଇଘରର ବାରଣ୍ଡାରେ ମୂର୍ଚ୍ଛା ହୋଇ ପଡ଼ିଗଲା । ଗୋଲମାଲ ହେବାରୁ ଅନ୍ନପୂର୍ଣ୍ଣା କହିଲେ—ମାଧବ, ଚ୍ୱଲ କ'ଣ ହେଲା ଦେଖିଆସିବା ।

ମାଧବ କହିଲା—ଦେଖିବା ଦରକାର ନାହିଁ ।

କାହିଁକ ଯେ ଦୁଇ ଜାଆ ଭିତରେ କଳ ହେଲା, ସେକଥା ଆଉ ଅଛପା ରହିଲାନ । ପରଦନ ଯେତେବେଳେ ସାହିର ସ୍ତ୍ରୀଲୋକ ଏକାଠି ବସିଲେ, ଏଲୋକେଶୀ କହିଲା—ଜାଆ ଭିତରେ ସିନା ଝଗଡ଼ା ହୋଇଛ, ପିଲାଟିର କ'ଣ ହେଲା ଯେ, ସେ ଆସିଲାନ । ସାନଖୁଡ଼ୀ ଠିକ୍ କହୁଛ—

Digitized by srujanika@gmail.com

ଯେମିତ ମାଆକୁ ସେମିତ ପୁଅ । ଅନେକ ପିଲା ଦେଖିଛୁ, ଏଭଳି ନମକ-ହାରାମ ପିଲା କେଉଁଠି ଦେଖିନ ।

ବନ୍ଦ୍ର ଏଲୋକେଶୀଙ୍କୁ ଥିକେ ସନ୍ଦେହ ଦୃଷ୍ଟିରେ ଚାହିଁ ତା'ପରେ ତଳକୁ ଚାହିଁରହିଲା । ଏଲୋକେଶୀ ପୁଣି ଆରମ୍ଭ କଲା—ତୁମେ ପିଲାଙ୍କ ଭଲପାଅ ବୋଲି—ଏକଥା ମୁଁ ଭଲକରି ଜାଣେ । ମୋ ନରେନ୍ଦ୍ରନାଥକୁ ପୁଅ କରି ନଅ । ମୁଁ ତୁମ କୋଳକୁ ଦେଇଦେଲି । ତମେ ତାକୁ ମାର, ହାଣ ଯାହା କଲେ ବି ହେନେହେଲେ ସେ କିଛି କହିବନି । ତା'ପରି ପିଲା ମୁଁ ଜନ୍ମ କରିନ ।

କିଛି ନକହି ବନ୍ଦ୍ର ବସିଥିଲା । ବନ୍ଦ୍ରର ମା' ଜମିଦାର ଘରର ଝିଅ, ପୁଣି ଜମିଦାର ଘର ବୋହୂ । ବୟସ ବି ହୋଇଗଲାଣି । ସେ ହସିଦେଇ କହିଲେ—ସେ କି କଥା ? ଅମୂଲ୍ୟକୁ ସେ ଅତି ନିଜର ପୁଅ ପରି ପାଳିଛୁ । ତାକୁ ତମେମାନେ ଏମିତ ପାଗଳ କରିଅନା । ମା' ବନ୍ଦ୍ର, ତମ ଦୁଇ ଜାଆଙ୍କର କଳି ହ'ଦନ ପାଇଁ—ସେଥିପାଇଁ କ'ଣ ପୁଅକୁ ପର କରିଦେବୁ ?

ଆଖି ଛଳଛଳ କରି ବନ୍ଦ୍ର ମା'ଙ୍କୁ ଚାହିଁରହିଲା । ମା' ତାକୁ ସାନ୍ତ୍ୱନା ଦେଲେ । ସନ୍ଧ୍ୟାବେଳକୁ ସେ କଦମ୍ବକୁ ଡାକି କହିଲା—ଆଲୋ କଦମ୍ବ, ସତ କହିବୁ । ତୁ ତ ସବୁ ଶୁଣିଛୁ । ମୁଁ ଅବା କି ବଡ଼ ଅପରାଧ କଲି ଯେ ସେ ଏତେବଡ଼ ରାଣ ପକାଇଲେ ?

ଏଇକଥା କହିବାକୁ ଯେ ସେ ତାକୁ ଡକେଇଛନ୍ତି କଦମ୍ବ ମୋଟେ ବିଶ୍ୱାସ କରିପାରିଲାନି । ଦୁହେଁ ତା'ର ମାଲିକାଣୀ । ତେଣୁ ସେ ମଉନ ହୋଇ ରହିଲା । କିନ୍ତୁ ବନ୍ଦ୍ର ପୁଣି କହିଲା—ତୁ ବୟସରେ ମୋଠୁଁ ବଡ଼ । ତୁ ସତ କହିବୁ, ମୋର କି ବା ଦୋଷହେଲା ଯେ ।

କଦମ୍ବ ମୁଣ୍ଡ ହଲାଇ କହିଲା—ଦୋଷ ଆଉ କ'ଣ ?

ବନ୍ଦ୍ର କହିଲା—ତେବେ ତୁ ସେ ପୁରୁଣା ଘରକୁ ଯା । ତାଙ୍କୁ ହ'ପଦ ଭଲକରି ଶୁଣେଇଦେଇ ଆସିବୁ । ତୋର ପୁଣି ଭୟ କ'ଣ ? କଦମ୍ବ ସାହସ ପାଇ କହିଲା—ଭୟ କ'ଣ ? ତେବେ ଝଗଡ଼ା କରି କି ଲାଭ ? ବନ୍ଦ୍ର କହିଲା—ତୁ ମୋଟେ ଜାଣିନୁ । ସତକଥା କହିଦେବା ଭଲ,

Digitized by srujanika@gmail.com

ନହେଲେ ଯେ ଧରନେବେ ସବୁ ଦୋଷ ମୋର । ସେ କିଛି ଦୋଷ କରି-
ନାହାନ୍ତି । ସେ କହିନାହାନ୍ତି, ବାହାର କରିଦେବ, ପଠେଇଦେବ । ସେକଥା
ଶୁଣି ମୁଁ କ'ଣ ରଗିଛି ? କାହିଁକି ସେ ଲୁଚେଇ ଅମୂଲ୍ୟକୁ ଟଙ୍କା ଦେଲେ ?
ମୋତେ କାହିଁକି କହେଇଲେନି ?

କଦମ୍ବ କହିଲା—ହଉ, କାଲି ଯିବ । ଏବେ ସନ୍ଧ୍ୟା ହେଲାଣି ।

ବନ୍ଦୁ କହିଲା—ସନ୍ଧ୍ୟା କାହିଁ ? ଶୀତଦିନ ବୋଲି ସେମିତି ଜଣା-
ପଡ଼ୁଛି । ହଉ ତେବେ କାହାକୁ ସାଙ୍ଗରେ ନେଇକରି ଯା । ଆରେ
ଭୈରବ ! ଚଲୁ ହେବୋକୁ ଡାକିବୁ । ସେ କଦମ୍ବ ସାଙ୍ଗରେ ଆରପାରିକୁ
ଯିବ ।

ଭୈରବ କହିଲା—"ବାବୁ ହେବୋ ହାତରେ ଲଣ୍ଠନ ସଫା କରୁଛ-
ନ୍ତି ।" ବନ୍ଦୁ ଭୈରବକୁ ଚାହିଁ କହିଲା—"ପୁଣି ମୁହଁ ଉପରେ ଜବାବ
ଦେଉଛୁ ?" ବନ୍ଦୁ କହୁ କହୁ ଭୈରବ ଦୌଡ଼ିପଳାଇଲା । କଦମ୍ବକୁ
ପଠାଇଦେଇ ବନ୍ଦୁ ଏ ଘର ସେ ଘର ହୋଇ ରୋଷେଇଘର ଭିତରକୁ
ଚାଲିଗଲା । ରାନ୍ଧୁଣୀ ନାନୀ ଏକଲା ବସି ରାନ୍ଧୁଥିଲା । ବନ୍ଦୁ ଯାଇ କହିଲା—
ସତ କହିଲ ନାନୀ, ତୁମେ ମୋ ସାକ୍ଷୀ । ଦୋଷ କାହାର ?

ରାନ୍ଧୁଣୀ ନାନୀ କିଛି ବୁଝିପାରିଲେନି । କହିଲା—"କାହାର କି ଦୋଷ
ମା' ?" ବନ୍ଦୁ କହିଲା—"ସେଦିନର କଥା । ମୁଁ କହିଲି, ଅପା ଅମୂଲ୍ୟକୁ
ଟଙ୍କା ଦେଇଛ କି ? କିଏ ନଜାଣେ ଛୁଆପିଲାଙ୍କୁ ଟଙ୍କାପଇସା ଦେବା
ଠିକ୍ ନୁହେଁ । କହିଥିଲେ ତ ହୋଇଥାନ୍ତା । ହଁ ଟଙ୍କା ଦେଇଦେଇଛି । କଥା
ସରିଯାଇଥାନ୍ତା । ଏତେ ରାଣ ନିୟମ ପର୍ଯ୍ୟନ୍ତ କଥା କାହିଁକି ଯାଇଥାନ୍ତା ।
ଏଥିପାଇଁ ଏତେ ରାଣ ନିୟମ ? ଗୋଟିଏ ବୋଲି ସେ ଆମର ବଂଶଧର ।
ତା' ନାଁରେ ପୁଣି ରାଣ ? ସତ କହୁଛି ଏ ଜନ୍ମରେ ତାଙ୍କ ମୁହଁକୁ ଚାହିଁବିନି ।
ଶତ୍ରୁକୁ ପଛେ ଚାହିଁବି, ତାଙ୍କୁ ମୋଟେ ଚାହିଁବିନି ।"

କଦମ୍ବ ଯେ କ'ଣ କହିଲା, ସେ ମୋଟେ ବୁଝିପାରିଲେନି । ବନ୍ଦୁ
ପୁଣି ଆରମ୍ଭ କଲା—"ରାଗ ହେଲେ କିଏ ରାଣ ନିୟମ ନପକାନ୍ତି କହିଲ ?
ସେଥିପାଇଁ ଏଠି ଜଳ ବି ସ୍ପର୍ଶ କଲେନି । ପୁଅକୁ ବି ପଠାଇଲେନି । ମୁରବି

Digitized by srujanika@gmail.com

ହୋଇ ଏମିତକା କାମ କରନ୍ତୁ ? ମୁଁ ବୟସରେ ଶ୍ରେଷ୍ଠ, ବୁଦ୍ଧି ବ କମ୍ । ମୁଁ ଯଦ ତାଙ୍କ ନଜ ଝିଅ ହୋଇଥାନ୍ତୁ, ସେ କ'ଣ ଏମିତ କରଥାନ୍ତେ ? ତାଙ୍କ ନାଆଁ ମୁଁ ମୁହଁରେ ଆଉ ଧରବନ—ତୁମେମାନେ ଦେଖିବ ।"

ତଥାପି ବୁଢ଼ା ରାଣୀ ନାନୀ କଛୁ ହେଲେ କହୁଲାନ । ବନ୍ଦୁ କହୁଚାଲଲା—ଖାଲ ସେ ରାଗ ପକାଇ ଜାଣେ, ମୁଁ ଦେଇ ଜାଣେନା ? କାଲ ମୁଁ ଯଦ ତାଙ୍କ ପାଖକୁ ଯାଇ କହୁବ—ଅପା, ରାଗ ରହୁଲା, ମୋ ପାଇଁ ଗିନାଏ ବସ ପଠେଇଦେବ—ତେବେ ସେ କ'ଣ କରବେ ? ମୁଁ ଦ'ଦନ ହେଲା ଚୁପ୍ ରହୁଛୁ । ତା'ପରେ ଯାଇ ତାଙ୍କୁ ଏଇ ରାଗ କଥା ଶୁଣେଇଦେବ । ନହେଲେ ନଜେ ବସ ପିଇଦେଇ କହୁବ ଯେ ଅପା ମୋ ପାଇଁ ପଠାଇଦେଇଥିଲେ । ଦେଖିବ ଲୋକେ ତାଙ୍କୁ ଛି-ଛାକର କରବେ କ ନାହିଁ ? ସେ ଜବତ ହେବେ କ ନାହିଁ ?

ରାଣୀ ନାନୀ ଭୟପାଇ କହୁଲେ—ସେସବୁ କଥା ମୁହଁରେ ଧରନା । କଳଗୋଳ ଚରସ୍ଥାୟୀ ନୁହେଁ । ସେ ତୁମକୁ କେବେ ଛାଡ଼ି ରହୁପାରବେନ । ଅମୂଲ୍ୟ ମଧ୍ୟ ରହୁପାରବେନ । ଅମୂଲ୍ୟ ଯେ କେମିତ ତୁମକୁ କେଇଦନ ଛାଡ଼ି ରହୁଛୁ, ସେଇ କଥା ଆଶ୍ଚର୍ଯ୍ୟ ।

ବ୍ୟସ୍ତ ହୋଇ ବନ୍ଦୁ କହଲ—ସେଇକଥା ପଡ଼ୁଛୁ । ତାକୁ ତା ମାଆ ମାରଧର କର ରଖିଛୁ । ଯିଏ ଗୋଟିଏ ରାତ ବ ମତେ ଛାଡ଼ି ଶୋଇପାରେନା, ସେ କେମିତ ସ୍ୱର-ପାଞ୍ଚଦନ ଛାଡ଼ି ରହୁଲଣି ! ସେମିତକା ସ୍ତ୍ରୀଲୋକର ମୁହଁ ଚାହିଁବା ଉଚତ ନୁହେଁ । ଯାହା କହଲ ଶହକୁ ପଛେ ଚାହିଁବ, ତାଙ୍କୁ ମୋଟେ ଚାହିଁବନ ଏ ଜନ୍ମରେ ।

ରାଣୀ ନାନୀ ନଜ କହୁଣୀ ପାଖରେ ଗୋଟିଏ କଳା ଦାଗ ଦେଖାଇ କହୁଲେ—ଏହୁ ଦେଖ ମା' । ଏବେ ବ ଦାଗ ଲଭେନ । ସେଦନ ରାତରେ ତୁମେ ମୂର୍ଚ୍ଛା ହୋଇଗଲ । ତମେ କଛୁ ଜାଣିନ । ଅମୂଲ୍ୟଧନ କେଉଁଠି ଥିଲେ ଦୌଡ଼ିଆସି ତୁମ ଉପରେ ହାମୁଡ଼େଇ ଯେତେ କାନ୍ଦଛନ୍ତୁ, ସେକଥା କହୁହେବନ । ଓଃ ସେ କ କାନ୍ଦ ଦେଖିଥିବ ମା ! ମୂର୍ଚ୍ଛା କ'ଣ ସେ ଜାଣିନାହାନ୍ତୁ । ତମ ମୂର୍ଚ୍ଛା ଅବସ୍ଥା ଦେଖି କାନ୍ଦ କାନ୍ଦ କହୁଲେ—ମୋ ସାକମା,

Digitized by srujanika@gmail.com

ମରିଗଲେ । ତାଙ୍କୁ ବୁଝାଇବାକୁ ଯାଇ ମୁଁ ତାଙ୍କୁ ଟାଣିଆଣିଲି । ସେ ମୋତେ ଜୋର୍‌କରି କାମୁଡ଼ିଦେଲେ । ବଡ଼ମା' ତାଙ୍କୁ ଟାଣି ଆଣିବାକୁ ଗଳାରୁ ତାଙ୍କ ଲୁଗା ଚିରିପକାଇଲେ । ଲୋକେ ସେବା-ସେବା କ'ଣ କରିବେ —ତା ଲାଗି ସମସ୍ତେ ବ୍ୟସ୍ତ । ଶେଷରେ ଗୁରି-ପାଞ୍ଚଜଣ ମିଶି ତାଙ୍କୁ ଟାଣିନେଲେ ।

ସତେ ଯେପରି ବନ୍ଦୁ ତା'ର ଏ କଥାଗୁଡ଼ାକ ଏକ ଧ୍ୟାନରେ ଶୁଣୁଥିଲା । ତା'ପରେ ଦୀର୍ଘ ନିଶ୍ୱାସ ପକାଇ ଘରଭିତରକୁ ଯାଇ ଶୋଇପଡ଼ିଲା ।

× × × ×

ଏଥର ଗୁରିଦିନ ପରେ ବନ୍ଦୁର ବାପ ମା, ପିଉସୀହେରିକା ଯିବା ପୂର୍ବଦିନ ବନ୍ଦୁ ପୁଣି ମୂର୍ଚ୍ଛା ହୋଇଗଲା । ତା'ପରେ ଭଲହୋଇ ବସିଥିଲା । କଦମ୍ବ ତାକୁ ବହିଦେଉଥିଲା । ବନ୍ଦୁ ଧୀରେ ଧୀରେ ପଗ୍ଚରିଲା—ନାନୀ ଆସିଛନ୍ତି କି ?

କଦମ୍ବ କହିଲା—ନା, ଆସିନାହାନ୍ତି । ଆମେ ତ ଏତେ ଲୋକ ଅଛୁ, ତାଙ୍କର ଆସିବା କି ଦରକାର ?

ଟିକଏ ରହି ବନ୍ଦୁ କହିଲା—ଏଇ ତ ତୁମମାନଙ୍କର ଦୋଷ । ସବୁ କାମରେ ନିଜର ବୁଦ୍ଧି ବଳ ଖଟାଅ । ଦେଖୁଛ, ଏମିତି କରି ମୋତେ କେବେ ମାରିଦେବ । ତମ କାମ ମୁଁ ଦେଖିନି ? ଘରପ୍ରତିଷ୍ଠା ଦିନ ଏତେ ଲୋକ ଘରେଥିଲେ—କିଛି କରିପାରିଲ କି ? ସେଇ ଅପା ଆସିବାରୁ ସବୁକାମ ସୁରୁଖୁରୁରେ ସରିଗଲା । ତାଙ୍କ ସଙ୍ଗେ ତୁମେ କଣ ସରିହେବ ? ଏ ଘରେ ଯେତେ ଲୋକ ଅଛ, ସମସ୍ତେ ମିଶିଲେ ବି ତାଙ୍କଭଳି ହେବନି ।

ବନ୍ଦୁର ମା' କହିଲେ—"ନ୍ୟାଉଁ କହୁଛନ୍ତି, ତୁ ଗୁଲ ଆମଘରେ କେଇଦିନ ବୁଲି ଆସିବୁ ।" ବନ୍ଦୁ ମା'ଙ୍କୁ ଗୁହିଁ ସଙ୍ଗେ ସଙ୍ଗେ ଉତ୍ତର ଦେଲା—"ମୋ ଯିବା ନଯିବା କ'ଣ ତାଙ୍କ ମତାମତ ଉପରେ ନିର୍ଭର କରେ । ସେ କହିଦେଲେ କ'ଣ ମୁଁ ଗୁଲିଯିବି । ମୋ ଭଗାଣୀର ହୁକୁମ ନପାଇଲେ ମୁଁ ଘରୁ ଗୋଡ଼ କାଢ଼ିପାରିବିନି ।"

Digitized by srujanika@gmail.com

ମା' ତା'ର ବୁଝିଣାଶ କହିଲେ—ତୁ ତୋ ଜାଆ କଥା କହୁଛୁ ତ ? ଯେତେବେଳେ ତୁମେ ଅଲଗା ହୋଇଗଲଣି ସେତେବେଳେ ଜ୍ୱାଇଁ ଅନୁମତି ଦେଲେ ତ ହେବ ।

ବନ୍ଧୁ ମୁଣ୍ଡ ହଲାଇ ମନାକରି କହିଲା—ସେକଥା କେମିତି ହେବ ? ଯେତେଦିନ ବଞ୍ଚିଥିବ, ସେତେଦିନ ପର୍ଯ୍ୟନ୍ତ ଯେଉଁଠି ଥାଏ ସେ ହିଁ ମୋର ମୁରବୀ ? ତାଙ୍କ ଅନୁମତି ନନେଇ ଘରୁ ପଦାକୁ ଗୋଡ଼ କାଢ଼ିବିନି । ନ କହିଗଲେ ଦେଢ଼ଶୁର ମୋର ରାଗିବେ ।

ଏଲୋକେଶୀ ପହଞ୍ଚି ଶୁଣୁଥିଲା । ସେ କହିଲା—ମୁଁ କହୁଛି ତୁମେ ଯାଅ ।

ବନ୍ଧୁ ତା କଥାର ଉତ୍ତର ଦେଲାନି । ମା' କହିଲେ—ହଉ ତେବେ ତାଙ୍କ ଅନୁମତି ନେବାକୁ ଲୋକ ପଠା ।

ବନ୍ଧୁ କହିଲା—କାହିଁକି ଲୋକ ପଠାଇବି ? ମୁହଁରେ ହଁ କରିବେ, କିନ୍ତୁ ଭିତରେ ପୁଣି ରାଗିଥିବେ । ସିବାପରେ ଦେଢ଼ଶୁରଙ୍କ ଆଗରେ ପାଞ୍ଚ କଥା ମୋ ନାଆଁରେ ଯୋଡ଼ିକରି କହିବେ । ତାଙ୍କ କଥା ମୁଁ ଜାଣିଛି । ମୁଁ ଯିବିନି ମା'—ତୁମେ ଯାଅ ।

ମା' ତା'ର ଆଉ କିଛି କହିଲେନି । ସେ ତା'ପରେ ତାଙ୍କ ଘରକୁ ଚାଲିଗଲେ । ଘରୁ ବନ୍ଧୁବାନ୍ଧବ ବିଦାୟ ହୋଇଗଲେ । ଏଡ଼େ ବଡ଼ କୋଠାଘରଟା ଶୂନ୍‌ଶାନ୍ ଲାଗିଲା । ସେ ଉପର ମହଲାରେ ରହେ । ତଳ ମହଲାରେ ଗୋଟିଏ ଘରେ ଏଲୋକେଶୀ ରହେ । ଉପର ମହଲାର ଗୋଟିଏ ଘର ସେ ତା'ର ପୁଅ ବୋହୂ ଲାଗି ଖୁବ୍ ସଜେଇ କରି ତିଆରି କରିଥିଲା । କେବେ ଯେ ତା ପୁଅ ବାହା ହୋଇଥାଆନ୍ତା ତା ଠିକ୍ ନାହିଁ । ସେ ଘରେ ବସିପଡ଼ି କେତେ କାନ୍ଦିଲା । ତଳକୁ ଓହ୍ଲାଇ ଆସୁଥିଲା । ସ୍ୱାମୀଙ୍କୁ ଦେଖି କହିଲା—ହଇ ହୋ, ସେକଥା କେମିତି ହେବ ?

ମାଧବ କହିଲା—କି କଥା ? ବନ୍ଧୁ ଆଉ କିଛି କହିପାରିଲାନି । ଦୀର୍ଘ ନିଶ୍ୱାସ ପକାଇ କହିଲା—ନା, ସେ କିଛି ନୁହେଁ ।

Digitized by srujanika@gmail.com

ପରଦିନ ମାଧବ ଘରେ ବସି କାମ କରୁଥିଲା । ବନ୍ଧୁ ଘର-ଭିତରକୁ ଆସି କହିଲା—ଦେବେଶ୍ୱର ସ୍ୱୀକାର କଲେ ସବୁ ?

—ହଁ ।

—ହଁ କ'ଣ ? ସ୍ୱୀକାର କରିବା ବୟସ କ'ଣ ତାଙ୍କର ଥିଲା ?

ମାଧବ କହିଲା—ସ୍ୱୀକାର କ'ଣ ମଣିଷ ବୟସ ଲଚି କରେ ? ଅଭାବ ହେଲେ ମଣିଷ ସ୍ୱୀକାର କରେ ।

—ତାଙ୍କର ଅଭାବ କ'ଣ ? ମୁଁ ସିନା ପର—ହେଲେ ତୁମେ ତ ତାଙ୍କର ନିଜ ଭାଇ ।

ମାଧବ କହିଲା—ସମାଚାର ଦୁଅ—ଜ୍ଞାତଜନ ପର ।

ବନ୍ଧୁ ବିସ୍ମିତ ହୋଇ କହିଲା—ତୁମେ ବଞ୍ଚି ଥାଉଁ ଥାଉଁ ତାଙ୍କୁ ଏ ବୟସରେ ସ୍ୱୀକାର କରିବାକୁ ପଡ଼ିଲା ?

ମାଧବ କହିଲା—"କାହିଁକି ସ୍ୱୀକାର କରିବେନି ? ଯିଏ ଯେମିତି କର୍ମ କରିଥାଏ, ସେ ସେମିତି ଫଳ ପାଏ । ଅଦୃଷ୍ଟରେ ଯାହା ଲେଖା ହୋଇଛି ତାହା ଅବଶ୍ୟ ଫଳିବ । ଏହା ମୁଁ ଅଙ୍ଗେ ଲିଭାଇଛି । ମୋ ବାପା ମା' କେବେ ମରିଗଲେ ଜାଣେନା । ଭାଉଜଙ୍କଠୁଁ ଶୁଣିଛି ଆମେ ଗରିବ ଥିଲୁ । କିନ୍ତୁ ମୁଁ ଦୁଃଖ କ'ଣ, କଷ୍ଟ କ'ଣ ଜାଣିନି । କେମିତି ମୁଁ ସ୍କୁଲ, କଲେଜରେ ପଢ଼ିଲି, କିଏ ଦରମା ଓ ପାଠପଢ଼ା ଖର୍ଚ୍ଚ ଦେଲା, ମୋତେ ଜଣାନାହିଁ । ସବୁ ବଡ଼ଭାଇ କରିଛନ୍ତି । ତା'ପରେ ଓକିଲାତି କଲି । ବେଶ୍ ଦି' ପଇସା ରୋଜଗାର କଲି । ତା'ପରେ ତୁମେ ବି ଗୁଡ଼ିଏ ଟଙ୍କା ଆଣିଲ । ତା'ପରେ ଏତେବଡ଼ କୋଠାଘର ବି ତୁମେ କେମିତି କଲ, ମୋତେ ଜଣାନାହିଁ । କିନ୍ତୁ ମୋ ବଡ଼ଭାଇଙ୍କ ଅବସ୍ଥା ? ଏବେ ବି ସେ ହାଡ଼ଭଙ୍ଗା ପରିଶ୍ରମ କରୁଛନ୍ତି । ସାତସିଆଁ ଲୁଗା ପିନ୍ଧୁଛନ୍ତି । ଶୀତଦିନେ କେବେହେଲେ ଦେହରେ ଜାମା ଦେଇନି । ଦିନକୁ ଥରେ ମାତ୍ର ଖାଆନ୍ତି—କେବଳ ଆମ ପାଇଁ । ସବୁକଥା ମୋର ମନେପଡ଼ୁଛି । ମାତ୍ର କେଇଟା ଦିନ ଆରାମ କରିଥିଲେ । ସେଥିରେ ଭଗବାନ ରାଗିଯାଇ ତାଙ୍କ ଆରାମ ପୁଣି ଛଡ଼ାଇନେଲେ ।" ଏହା କହି ସେ ମୁହଁ ବୁଲାଇଦେଲା ।

Digitized by srujanika@gmail.com

ବନ୍ଦୁ ସ୍ତମ୍ଭିତ ହୋଇ ଶୁଣୁଥିଲା । ସ୍ୱାମୀ ତା'ର ଅଜ୍ଞାତ ଜୀବନ ମାଧ୍ୟମରେ ତାକୁ କପଟ ବ୍ୟବହାର କଲେ ସେକଥା ବନ୍ଦୁ ମର୍ମେ ମର୍ମେ ଅନୁଭବ କଲା । ତା'ପରେ ମାଧବ କହିଚାଲିଲେ—ଚାକିରି ବୋଲି ଚାକିରି । ରାଧାପୁର କଚେରୀରେ ଚାକିରୀ । ଯା-ଆସ କଲେ ଦିନକୁ ପାଞ୍ଚ-କୋଶ ବାଟ । ଘରୁ ଭୋର ଚାରିଟାରୁ ବାହାରି କଚେରୀରେ ଦିନସାରା ଉପବାସରେ କାମ କରି ସଂଧ୍ୟାକୁ ଫେରିଆସି ଘରେ ଖାଉଛନ୍ତି । ମାସକୁ ଦରମା ବାରଟଙ୍କା ।

ବନ୍ଦୁ ଶିହରିଉଠି କହିଲା—ଦିନସାରା ଉପବାସ ! ମାସକୁ ଦରମା ମୋଟେ ବାରଟଙ୍କା ।

—ହଁ, ବାରଟଙ୍କା । ବୁଢ଼ା ବି ହେଲେଣି । ତା' ସାଙ୍ଗକୁ ଅଫିମଖିଆ ଲୋକ । କ୍ଷୀର ଟୋପାଏ ବି ପାଉନଥିଲେ । ଭଗବାନ ଏତେଦିନେ ତାଙ୍କ ଦୁଃଖମୋଚନ କଲେ ଦେଖୁଛି ।

ବନ୍ଦୁର ଆଖିରୁ ଝରଝର ହୋଇ ଲୁହ ବୋହିପଡ଼ିଲା । ଯାହା ସେ ଆଜି ପର୍ଯ୍ୟନ୍ତ କରିନଥିଲା, ଅଜି ସେ ତାହା କଲା । ଅଣ୍ଡେଇପଡ଼ି ସ୍ୱାମୀର ଦୁଇ ଗୋଡ଼ ଧରି କହିଲା—ତୁମ ପାଦ ଧରୁଛି, କ'ଣ ଗୋଟାଏ ଉପାୟ କର । ରୋଗା ମଣିଷ । ଏ ବୟସରେ ଏମିତି ଖଟିଲେ ଦି'ଦିନ ବି ବଞ୍ଚିବେନି ।

ମାଧବର ଅଜାଣତରେ ତା ଆଖିରୁ ଲୁହ ଝରିପଡ଼ିଲା । ସେ ଲୁହ ପୋଛୁ ପୋଛୁ କହିଲା—ମୁଁ କି ଉପାୟ କରିବ ? ବାଉଜି ମୋ କଥା ମୋଟେ ଶୁଣିବେନି ଆଉ ଭାଇ ଯଦି କିଛି କାମ ନକରିବେ ତେବେ ତାଙ୍କ ଘର ବି କେମିତି ଚଳିବ ?

ବନ୍ଦୁ କହିଲା—"ମୁଁ ସେକଥା ଜାଣେନା । ତୁମେ ମୋ ପତିଦେବତା । କିନ୍ତୁ ସେମାନେ ତୁମଠାରୁ ବଡ଼ । ଛିଃ ଛିଃ, ଯେଉଁ କଥା ମୁହଁରେ ଧରିବା କଥା ନୁହେଁ, ସେକଥା ପୁଣି ?"—ସେ ଆଉ କିଛି କହିପାରିଲାନି ।

ମାଧବ କହିଲା—ତେବେ ତୁମେ ବାଉଜିଙ୍କ ପାଖକୁ ଯାଅ । ତୁମେ ଗଲେ ତା'ର ରାଗ କମିଯିବ । ଯେମିତି ଖୁସି ହେବେ ସେମିତି କର । ମୋ ଗୋଡ଼ ଦିନରାତି ଧରି ବସିଲେ ବି କିଛି ହେବନି ।

Digitized by srujanika@gmail.com

ବନ୍ଧୁ ସଙ୍ଗେ ସଙ୍ଗେ ତାଙ୍କ ଗୋଡ଼ ଛାଡ଼ିଦେଇ କହିଲା—ପାଦ ଧରିବା ଅଭ୍ୟାସ ମୋର ନୁହେଁ । ଏବେ ଜାଣୁଛ, ସେଦିନ ଅପା କାହିଁକି ଜଳସ୍ପର୍ଶ କଲେନି ଏଠି । ତୁମେ ଶତ୍ରୁଙ୍କ ଭଳି ଜାଣିଶୁଣି ଚୁପ୍‌ଚାପ୍ ରହିଲ । ମୋର ଅପରାଧ ବଢ଼ିଗଲା । ତୁମେ ପଦେହେଲେ କଥା କହିଲନି ।

ମାଧବ କହିଲା—ଏ ବିଦ୍ୟା ମୁଁ ମୋ ଭାଇଙ୍କଠାରୁ ଶିଖିଛି । ଭଗବାନ କରନ୍ତୁ ଯେମିତି ମୁଁ ଏମିତି ନୀରବ ରହି, କାହାକୁ କିଛି ନକହି ମୋ ଜୀବନଟା ଚାଲିଯାଉ ।

ବନ୍ଧୁ ଆଉ କିଛି କହିଲନି । ଘରଭିତରକୁ ଯାଇ କବାଟ ବନ୍ଦକରି ଶୋଇପଡ଼ିଲା । ମାଧବ ଯେତେବେଳେ କାମ ସାରି ଉଠିବାକୁ ଉପକ୍ରମ କରୁଥିଲା ସେତେବେଳେ ହଠାତ୍ ପୁଣି ବନ୍ଧୁ ସେଠାରେ ପହଞ୍ଚିଲା । ତା' ଆଖି ଦୁଇଟି ଲାଲ । ତା' ଅବସ୍ଥା ଦେଖି ମାଧବର ଦୟାହେଲା । ସେ କହିଲା—ତୁମେ ଥରେ ମାତ୍ର ଭାଇଙ୍କ ପାଖକୁ ଯାଅ । ତୁମେ ତ ତାଙ୍କ କଥା ଜାଣିନ । ଥରେ ମାତ୍ର ଯାଇ ତାଙ୍କ ପାଖରେ ଠିଆ ହୁଅ—ଦେଖିବ ସବୁ ଠିକ୍‌ଠାକ୍ ହୋଇଯିବ ।

ବନ୍ଧୁ ଅତ୍ୟନ୍ତ ବ୍ୟାକୁଳ ଭାବରେ କହିଲା—ପୁଅ ରାଣ ଦେଉଛି—ତମେ ଯାଅ ।

ମାଧବ ବନ୍ଧୁର ମନକଥା ଜାଣିପାରିଲା—ସେ ଟିକିଏ ଗରମ ହୋଇ କହିଲା—ତମେ ହଜାର ପ୍ରକାର ରାଣ ପକାଇଲେ ବି ମୁଁ ଭାଇଙ୍କୁ କିଛି କହିପାରିବିନି । ସେ ନିଜେ କୌଣସି କଥା ନପଚାରିବା ପର୍ଯ୍ୟନ୍ତ ମୁଁ ମନକୁ କିଛି କହିନି, ଏତେ ବଡ଼ ସାହସ ମୋର ଆଜି ପର୍ଯ୍ୟନ୍ତ ହୋଇନି । ଜୀବନ ଚାଲିଗଲେ ବି ନୁହେଁ ।

ତଥାପି ବନ୍ଧୁ ସେଠାରୁ ଉଠିଲା ନାହିଁ । ମାଧବ କହିଲା—କ'ଣ ଯାଇପାରିବନି ? ବନ୍ଧୁ ଜବାବ ଦେଲା—ନା । ମୁଣ୍ଡ ତଳକୁ କରି ଧୀରେ ଧୀରେ ସେଠାରୁ ଚାଲିଗଲା ।

Digitized by srujanika@gmail.com

# ଆଠ

ନୂଆଘର ଅଗଦେଇ ସ୍କୁଲକୁ ଯିବା ବାଟ । ପ୍ରଥମେ କେଇଦିନ ଅମୂଲ୍ୟ ଛତା ଆଡ଼ୁଆଳ କରି ଏହି ବାଟଦେଇ ଯାଇଥିଲା । ତା'ପରେ ସେ ଆଉ ଯାଇନି । ଖୁଣ୍ଟି ଖୁଣ୍ଟି ବନ୍ଦୂର ଆଖିର ପାଣି ଆଖିରେ ମଲା । ତଥାପି ସେ ନିଳରଙ୍ଗର ଛତା ଆଉ ଦେଖିପାରିଲାନି । ସକାଳ ଦଶଟାରୁ କେତେ ରଙ୍ଗର ଛତା, କେତେ ପିଲାଙ୍କର ଖୁଲି ସେ ଦେଖିଲା—ହେଲେ ତା'ର-ଅତି ପରିଚିତ ଖୁଲି ଓ ନାଲି ରଙ୍ଗର ଛତାଟି ଦେଖିପାରିଲାନି । ସନ୍ଧ୍ୟା-ବେଳକୁ ସେ ଆଖିରୁ ଲୁହ ପୋଛୁ ପୋଛୁ ଆସୁଥିବା ସମୟରେ ନରେନ୍‌କୁ ଦେଖିପାରି କହିଲା—ଆରେ ନରେନ୍, ସ୍କୁଲକୁ ଯିବା ବାଟ ତ ଆମ ଏ ଘର ଆଗ ରାସ୍ତା । ଅମୂଲ୍ୟ କ'ଣ ଏ ବାଟ ଦେଇ ଯାଉନାହିଁରେ ?

ନରେନ୍ କିଛି ନକହି ଚୁପ୍ ହୋଇ ରହିଲା ।

ବନ୍ଦୁ କହିଲା—ତମେ ଦୁଇଭାଇ ସାଙ୍ଗ ହୋଇ ସ୍କୁଲକୁ ଯାଆସ କରିବା କଥା—କାହିଁ ଯାଉନ ତ ।

ନରେନ୍ ଅମୂଲ୍ୟକୁ ଭାରି ଭଲପାଏ । ସେ ଚୁପ୍‌ଚୁପ୍ କହିଲା—ଲାଜରେ ସେ ଏ ବାଟେ ଯାଉନି, ସେ ବାଟେ ବୁଲିକରି ଯାଉଛି ।

ବନ୍ଦୁ କହିଲା—କ'ଣ ଲଜ୍ୟାକରେ ? ନା ନା, ତାକୁ କହ ସେ ଏଇ ବାଟଦେଇ ଯାଉ ।

ନରେନ୍ କହିଲା—କେବେ ସେ ଏ ବାଟେ ଯିବନି । କାହିଁକି ଯିବନି ଜାଣ ?

ଉତ୍ସାହିତ ହୋଇ ବନ୍ଦୁ କହିଲା—କାହିଁକି ?

ନରେନ୍ କହିଲା—ତୁମେ ରାଗିବନାହିଁ ତ ।

—ନା ।

—ତାଙ୍କ ଘରେ କିଛି କହିବନାହିଁ ତ ?

Digitized by srujanika@gmail.com

—ନା ।

—ମୋ ମା'ଙ୍କୁ କହିବନାହିଁ ତ ?

ବନ୍ଦୁ ଅସ୍ଥିର ହୋଇ କହିଲା—ଆରେ ନା ନା, କାହାକୁ କହିବନି ।

ନରେନ୍ ଚୁପଚୁପ କହିଲା—ମାଷ୍ଟର ମହାଶୟ ତା' କାନ ଜୋର୍‌ରେ ମୋଡ଼ିଦେଇଛନ୍ତି ।

ରାଗରେ ନିଆଁ ଭଳି ଜଳଉଠି ବନ୍ଦୁ କହିଲା—କାହିଁକି ମୋଡ଼ିଦେଲେ ? ମାଡ଼ ନଦେବାକୁ ମୁଁ ପରା ମାଷ୍ଟର ମହାଶୟଙ୍କୁ କହିଥିଲି ?

ନରେନ୍ କହିଲା—ତାଙ୍କର ଦୋଷ କ'ଣ ? ସେ ନୂଆ ଲୋକ । ଆମ ଚାକର ହେବୋ—ସେଟା ଖୁବ ବଦମାସ । ସେ ଆଜି ମା'ଙ୍କୁ କହି-ଦେଇଛି । ମୋ ମା' ବି କମ୍ ଖରାପ ଲୋକ ନୁହେଁ । ସେ ମାଷ୍ଟରଙ୍କୁ କହି-ଦେବାକୁ କହିଦେଲେ । ତହୁଁ ମାଷ୍ଟର ମହାଶୟ ଖୁବ୍ ଜୋର୍‌ରେ କାନ ମୋଡ଼ିଦେଲେ । ସେ କେମିତି କାନ ମୋଡ଼ିଦେଲେ କହିବି ମାଉଁ ?

ବନ୍ଦୁ କହିଲା—ହେବୋ କ'ଣ କହିଦେଲା ?

—କ'ଣ କହିଲା ଜାଣ ? ଖେଳଛୁଟି ବେଳକୁ ହେବୋ ମୋର ଜଳଖିଆ ନେଇକରି ଯାଏ । ଅମୂଲ୍ୟ ମୋ ପାଖକୁ ଛୁଟିଆସି କହେ କ'ଣ ଜଳଖିଆ ଆସିଛି ଦେଖି ନରେନ୍ ଭାଇ ! ମା' ଶୁଣିକରି କହିଲେ, ଅମୂଲ୍ୟ ଜଳଖିଆରେ ନଜର ଦେବ ।

—ଆଚ୍ଛା, ଅମୂଲ୍ୟ ପାଇଁ କ'ଣ କେହି ଜଳଖିଆ ଧରି ଯାଏନା ?

ନରେନ୍ କପାଳରେ ହାତ ମାରି କହିଲା—ସେ କେଉଁଠୁ ଜଳଖିଆ ପାଇବ ? ସେ ତ ଗରିବ । ପକେଟରେ ସେ ବୁଟଭଜା ନେଇଆଏ । ଖେଳଛୁଟିରେ ଲୁଚିକରି ଗଛତଳେ ବସି ଖାଏ ।

ବନ୍ଦୁର ଆଗରେ ସାରା ପୃଥିବୀଟା ସତେ ଯେପରି ଘୂରିବାକୁ ଲାଗିଲା । ସେ ଦୁଲ୍‌କରି ତଳେ ବସିପଡ଼ିଲା । କିଛି ସମୟ ପରେ କହିଲା—ନରେନ୍, ତୁ ଯା ।

ସେଦିନ ରାତିରେ ସେ ଖାଇପାରିଲାନି । ତା' ଦେହ ଭଲନାହିଁ ବୋଲି କହିଲା । ତା'ପରଦିନ ବି ସେ ଉପାସରେ ରହିଲା । କାହାକୁ ତା

Digitized by srujanika@gmail.com

ମନକଥା କହିଲାନି କି କିଛି ଉପାୟ ଭାବି ଠିକ୍ କରିପାରିଲାନି । କଥା କହିଲେ କାଳେ ପୁଣି ବଡ଼ କିଛି ଗୋଟାଏ ଅପରାଧ ହୋଇଯିବ ସେ ଭୟରେ କିଛିହେଲେ ପ୍ରକାଶ କଲାନି । ମାଧବ ଖାଇସାରି ଶୋଇବାକୁ ଯିବାରୁ ବନ୍ଦୁ ଯାଇ ତାଙ୍କ ଗୋଡ଼ ପାଖରେ ବସି ପାଦଉପରେ ହାତ ବୁଲାଇଲା ।

ମାଧବ ତା'ର ମନକଥା ଜାଣିପାରି ଦୁଃଖିତ ସ୍ୱରରେ କହିଲା—ମୋ ପାଖରେ କାନ୍ଦିଲେ କଣ ହେବ ? ଭାଇଙ୍କ ପାଖକୁ ଯାଅ ।

ବନ୍ଦୁ କହିଲା—ତୁମେ ଯାଅ ।

—ମୁଁ ଯାଇ ତୁମ କଥା କହିଲେ ଭାଇ ମୋତେ ଶୁଣିବେ ନାହିଁ ।

ବନ୍ଦୁ କହିଲା—ମୋର ସବୁ ଦୋଷ ହୋଇଛି ବୋଲି ମାନୁଛି । ମୁଁ କ୍ଷମା ଚାହୁଁଛି । ତୁମେ ଯାଇ କୁହ ।

"ମୁଁ ସେକଥା ପାରିବିନି"—କହି ମାଧବ କଡ଼ ଲେଉଟେଇ ଶୋଇପଡ଼ିଲା ।

ବନ୍ଦୁ ଆଉ କିଛି ସମୟ ସ୍ୱାମୀର ଗୋଡ଼ ପାଖରେ ବସି ରହିଲା । କିନ୍ତୁ ମାଧବ କିଛି ନକହିବାରୁ ସେ ବାଧ୍ୟ ହୋଇ ଉଠି ଚାଲିଗଲା । ସ୍ୱାମୀର ଏଭଳି ବ୍ୟବହାରରେ ତା'ର ହୃଦୟ ଭାଙ୍ଗିପଡ଼ିଲା । ଆଜି ସେ କାଂସାରିସ୍ୱରେ ବୁଝିଲା, ସମସ୍ତେ ଏପରିକି ତା'ର ସ୍ୱାମୀ ମଧ୍ୟ ତାକୁ ତ୍ୟାଗ କରିଛନ୍ତି ।

ବାପାଙ୍କ ଦେହ ଖରାପ ବୋଲି ପରଦିନ ସକାଳେ ବନ୍ଦୁ ଖବର ପାଇଲା । ତେଣୁ ବାପଘରକୁ ଯିବାଲାଗି ଗାଡ଼ି ବରାଦ କଲା । ଛଳଛଳ ଆଖିରେ ବନ୍ଦୁ ଗାଡ଼ିରେ ଯାଇ ବସିଲା । ରାହୁଣୀ ନାନୀ ଗାଡ଼ି ପାଖକୁ ଆସି କହିଲା—ମା', ବାପାଙ୍କ ଭଲ ଖବର ନେଇ ଶୀଘ୍ର ଫେରିଆସିବ ।

ବନ୍ଦୁ ଗାଡ଼ିରୁ ଓହ୍ଲାଇପଡ଼ି ତା' ପାଦଧୂଳି ନେବାରୁ ରାହୁଣୀ ନାନୀ ବିସ୍ମିତ ହୋଇଗଲା । ବନ୍ଦୁକୁ ଏପରି ନମ୍ର ହେବାର କେହି କେବେ ଦେଖି ନଥିଲେ । ସେ ଓଲଟି ହୋଇ କହିଲା—ତୁମେ ବାହ୍ମଣ ଘରର ସ୍ତ୍ରୀଲୋକ । ବୟସରେ ମୋଠାରୁ ବଡ଼ । ଆଶୀର୍ବାଦ କର ଯେପରି ମୁଁ ଆଉ ଏଠିକି ନଫେରେ । ଏ ଯାତ୍ରା ମୋର ଯେପରି ଶେଷଯାତ୍ରା ହେଉ ।

Digitized by srujanika@gmail.com

ରନ୍ଧୁଣୀ ନାନୀ ଏକଥା ଶୁଣି କାନ୍ଦପକାଇଲା । ପାଖରେ ଏଲୋକେଶୀ ଠିଆ ହୋଇଥିଲେ । ସେ ଖର୍ ଖର୍ କରି କହିଲେ—"ଏ କି କଥା ? ବାପ ମା'ଙ୍କର କ'ଣ ଦେହ ଅସୁଖ ହୁଏନି ?" ବିନ୍ଦୁ କିଛି ଉତ୍ତର ନଦେଇ ଗାଡ଼ି ଭିତରେ ଯାଇ ବସୁ ବସୁ କହିଲା—"ତୁମକୁ ମଧ୍ୟ ମୋର ନମସ୍କାର ନାନୀ । ମୁଁ ଯାଉଛି ।" ଏଲୋକେଶୀ କହିଲେ—"ଯାଅ । ମୁଁ ପରେ ରହି ସବୁ ଦେଖାଶୁଣା କରିବ ।" ତା'ପରେ ଗାଡ଼ି ଛାଡ଼ିଦେଲା ।

ରନ୍ଧୁଣୀ ନାନୀ ଯାଇ ଅନ୍ନପୂର୍ଣ୍ଣାଙ୍କୁ ସବୁକଥା ଜଣାଇଦେଲା । ସବୁ ଶୁଣି ଅନ୍ନପୂର୍ଣ୍ଣା ଚୁପ୍ ରହିଲେ । ବିନ୍ଦୁ ଯେତେଥର ବାପଘରକୁ ଯାଇଛି ଅମୂଲ୍ୟକୁ ସଙ୍ଗରେ ନେଇ ଯାଇଛି । ତାକୁ ନନେଇ ଏକଲା ଯାଏନାହିଁ । ଆଜିକୁ ମାସେହେଲା ସେ ତାକୁ ଟିକେ ଦେଖିଲା ନାହିଁ । ଅମୂଲ୍ୟର ଦୁଃଖ ସେ ବୁଝିପାରିଲେ ।

ରାତିରେ ଶୋଇଲାବେଳେ ଅମୂଲ୍ୟ ବାପା ସଙ୍ଗରେ ଗପ କରୁଥାଏ । ଖଟତଳେ ଲଣ୍ଠନ ଆଲୁଅରେ ଅନ୍ନପୂର୍ଣ୍ଣା କନ୍ଥା ସିଲାଇ କରୁଥିଲେ । ସେ ଦୀର୍ଘ ନିଶ୍ୱାସ ପକାଇ କହିଲେ—ଛିଃ ଛିଃ, ଏ କି କଥା । ଯିବାବେଳରେ ପୁଣି କହିଗଲା—ଏ ଯିବାଟା ଯେମିତି ତା'ର ଶେଷ ଯିବା ହେଉ । ମାଆ ଦୁର୍ଗା ଭରସା । ସିଏ ଭଲରେ ଭଲରେ ଫେରିଆସୁ ।

ଅନ୍ନପୂର୍ଣ୍ଣାର କଥା ଶୁଣିପାରି ଯାଦବ କହିଲେ—ପ୍ରଥମରୁ ତୁମେ ଠିକ୍ କଲନାହିଁ ଅନ୍ନପୂର୍ଣ୍ଣା । ମୋ ମାଆକୁ ତମେ କେହି ଚିହ୍ନିଲ ନାହିଁ ।

ଅନ୍ନପୂର୍ଣ୍ଣା କହିଲେ—ସେ ବି ତ ଅପା ବୋଲି କହି କାହିଁ ଆସିଲା-ନାହିଁ ତ ! ତା' ପୁଅକୁ ସେ ତ ଜୋର୍‌କରି ନେଇପାରିଥାଆନ୍ତା—ତା' ବି କଲାନି । ଘରପ୍ରତିଷ୍ଠା ଦିନ ଦିନସାରା କାମ କରି ନଖାଇ ଆସିଲା । ଆସିବା ସମୟରେ ପୁଣି କେତେ କଡ଼ା କଥା ବି ମୋତେ କହିଦେଲା ।

ଯାଦବ କହିଲେ—ମୋ ମା' କଥା ମୁଁ କେବଳ ଜାଣେ । ତୁମେ ଯଦି ତା'ର ଦୋଷ କ୍ଷମା କରିନପାରିଲ, ତେବେ ବଡ଼ବୋହୂ କାହିଁକି ହୋଇଥିଲ ? ତୁମେ ଯେମିତି, ମାଧବ ବି ସେମିତି । ଦେଖୁଛି ସମସ୍ତେ ମିଳିମିଶି ମୋ ମା'ର ପ୍ରାଣଟା କେଉଁଦିନ ନେଇଯିବ ।

Digitized by srujanika@gmail.com

ଅନ୍ନପୂର୍ଣ୍ଣାର ଆଖିରୁ ଟପ୍ ଟପ୍ କରି ଲୁହ ବୋହିପଡ଼ିଲା । ଅମୂଲ୍ୟ କହିଲା—"ସାନବୋଉ କାହିଁକି ଆଉ ଆସିବନି କହୁଛୁ ?" ଅନ୍ନପୂର୍ଣ୍ଣା ଲୁହ ପୋଛୁ ପୋଛୁ କହିଲେ—ଆରେ ଅମୂଲ୍ୟ ତୋ ସାନବୋଉ ପାଖକୁ ଯିବୁ ?

—ନା, ଯିବିନି ।

—କାହିଁକି ନା'ରେ ? ସାନବୋଉ ତୋର ଅଜାଘରକୁ ଯାଇଛନ୍ତି । ତୁ ବି କାଲି ଯା ।

ଅମୂଲ୍ୟ ଚୁପ୍ ରହିଲା । ଯାଦବ କହିଲେ—ଯିବୁକିରେ ଅମୂଲ୍ୟ ? ଅମୂଲ୍ୟ କହିଲା—ନା, ଯିବିନି ।

ରାତି ଥାଉଁଥାଉଁ ଯାଦବ ରାଧାପୁର କଚେରୀକୁ କାମ କରିବାକୁ ବାହାରିପଡ଼ିଲେ । ସେଦିନ ଟିକେ ଡେରିହୋଇଗଲା । ଅନ୍ନପୂର୍ଣ୍ଣା କହିଲେ—ରାତି ପରି ପାହିଗଲା, କେତେବେଳେ ଯିବ ?

ଯାଦବ ଯାଉଯାଉ କହିଲେ—ମୋ ମନଟା ଆଜି ଆଦୌ ଭଲ-ଲାଗୁନି । ମୋର ମନେହେଲା ସତେ ଯେପରି ମୋ ମା' କାଲି ରାତିରେ ଆସି ଏହି କବାଟ କଣରେ ଠିଆହୋଇରହିଥିଲେ । ମା ଦୁର୍ଗା ଭରସା, କହି କହି ସେ ରାଧାପୁର ଚାଲିଗଲେ ।

ସକାଳେ ଅନ୍ନପୂର୍ଣ୍ଣା ରୋଷେଇଘରେ କାମ କରୁଥିଲେ । ସେ ଘରର ଚାକର ଆସି ଖବର ଦେଲା—ବାବୁ କାଲି ରାତିରୁ ଫଗୁସତଙ୍ଗାକୁ ଯାଇଛନ୍ତି । ମା'ଙ୍କର ଦେହ ତାଙ୍କ ବାପଘରେ ବହୁତ ଖରାପ ।

ସ୍ୱାମୀଙ୍କ କଥା ଅନ୍ନପୂର୍ଣ୍ଣାର ଚଟ୍‌କରି ମନେପଡ଼ି ସେ ଚମକିପଡ଼ିଲେ । ସେ କହିଲେ—"କଣ ହୋଇଛି ?" ଚାକର କହିଲା—ଭଲକରି ଜାଣେନା । ଶୁଣିଲି ଖାଲି ଅଚେତ ହୋଇଯାଉଛନ୍ତି ।

ସନ୍ଧ୍ୟାରେ ଯାଦବ ଯେତେବେଳେ ଘରକୁ ଫେରି ସବୁ ଖବର ଶୁଣିଲେ, ସେ କାନ୍ଦ କାନ୍ଦ କହିଲେ—କେତେ ଚେଷ୍ଟାରେ ସୁନାର ପ୍ରତିମାଟିକୁ ବୋହୂ କରି ଘରକୁ ଆଣିଥିଲି । ତାକୁ ପାଣିରେ ଭସାଇ-ଦେଲି ? ମୁଁ ଏବେ ଯିବି ।

Digitized by srujanika@gmail.com

ଦୁଃଖରେ ଅନ୍ନପୂର୍ଣ୍ଣାର ଛାତି ଫାଟିପଡୁଥିଲା । ଅମୂଲ୍ୟ ଅପେକ୍ଷା ସାନ-ବୋହୂକୁ ସେ ଖୁବ୍ ଭଲପାଆନ୍ତି । ଯାଦବ ଠାକୁର ଘରକୁ ଗଲେ । ଅନ୍ନପୂର୍ଣ୍ଣା କାନ୍ଦି କାନ୍ଦି ଅନ୍ଧକାରରେ ବାରଣ୍ଡାରେ ବସିପଡ଼ିଲେ । ଟିକଏ ପରେ ମାଧବର ପାଟି ଶୁଣିପାରି କୋହ ସମ୍ଭାଳି କାଠ ଭଳି ବସିରହିଲେ । ଭାଉଜଙ୍କୁ ଷ୍ଟେସନରେ ନପାଇ ମାଧବ ଫେରିଆସି ବାରଣ୍ଡାରେ ଭାଉଜ ବସିଥିବାର ଦେଖି କହିଲେ—ଶୁଣିଲଣି ତ ଭାଉଜ ?

ଅନ୍ନପୂର୍ଣ୍ଣା କିଛି କହିପାରିଲେନି । ମାଧବ କହିଲା—ଶେଷ ସମୟରେ ଅନ୍ତିମ ଥରେ ଗଲୁ । ବୋଉ ଆଉ ବଞ୍ଚିବନି ।

ଅନ୍ନପୂର୍ଣ୍ଣା ହୋ'କରି କାନ୍ଦିଉଠିଲେ । ଯାଦବ ଆରପଟୁ ପାଗଳଙ୍କ ଭଳି ଦୌଡ଼ିଆସି କହିଲେ—ଏପରି କାହିଁକି କନ୍ଦାକଟା କରୁଛ ? ମୋର ଜାଣିତରେ ବା ଅଜାଣତରେ ମୁଁ କାହାର କ୍ଷତି କରିନି କି କା ମନରେ ଦୁଃଖ ଦେଇନି । ମୋର ଏ ପଚିଶତି ବୟସରେ ଭଗବାନ କେବେହେଲେ ଏତେ ବଡ଼ ଦୁଃଖ ମତେ ଦେବେନି ।

ମାଧବ ଚୁପ ହୋଇଗଲା । ଯାଦବ କହିଲେ—ମୋତେ ସବୁକଥା ଖୋଲିକରି କହ । ମୁଁ ମା'ଙ୍କୁ ଯାଇ ଫେରାଇଆଣିବି । ତୁ ଏମିତି ପାଗଳ ପରି ହେଲେ ଚଳିବ ମାଧବ ? ଗାଡ଼ି ସାଙ୍ଗରେ ଆଣିଛୁ ?

—ନା ।

—ହଉ ତେବେ ଚାଲ ଅମୂଲ୍ୟ—ତୁମେ ବି ଚାଲ ଅନ୍ନପୂର୍ଣ୍ଣା ।

—ମାଧବ କହିଲା—ରାତିଟା କଟିଯାଉ । ସକାଳେ ଯିବା ।

"ନା ନା, ମୁଁ ଏବେ ଯିବି । ଯା ଗାଡ଼ି ଡାକିଆଣେ । ନହେଲେ ମୁଁ ଚାଲି ଚାଲି ରାତିରେ ଯିବି ।"

ମାଧବ ଗାଡ଼ି ଆଣିବାରୁ ଚାରିଜଣ ଗାଡ଼ିରେ ବସିଲେ । ଯାଦବ କହିଲେ—"କ'ଣ ହେଲା କହିଲୁ ।" ମାଧବ କହିଲା—ମୁଁ ଘରେ ନଥିଲି । ଭଲଭାବରେ ଜାଣିନି । ଶୁଣିଲି ଚାରିଦିନ ତଳେ ଖୁବ୍ ଜ୍ୱର ହୋଇଥିଲା । ତା'ପରେ ତ ଘନ ଘନ ମୂର୍ଚ୍ଛା । ଚାରିଦିନ ହେଲା ସେ ଔଷଧ କି କ୍ଷୀର ଟୋପାଏ ସୁଦ୍ଧା ପିଇନି । ସେ ଯେ ଆଉ ବଞ୍ଚିବ ସେ ଆଶା ନାହିଁ ।

Digitized by srujanika@gmail.com

ଯାଦବ କହିଲେ—"ଚୁପ୍‌କର । ଏତେ ବଡ଼ ଅମଙ୍ଗଳ କଥା ମୁହଁରେ ଧର୍‌ନା । ସେ ନିଶ୍ଚୟ ବଞ୍ଚିବେ । ମା' ମୋର ନିଶ୍ଚୟ ବଞ୍ଚିଛନ୍ତି । ଏ ବୁଢ଼ା ବୟସରେ ଭଗବାନ ମୋ ପାଖିରେ କେବେହେଲେ ମିଛ କଥା କୁହାଇ-ଦେବେନି—ସେ ବିଶ୍ୱାସ ମୋର ଅଛି । ଆଜି ପର୍ଯ୍ୟନ୍ତ ମୁଁ କେବେହେଲେ ମିଛ କହିନି ।"

ମାଧବ ଆଖିର ଲୁହ ପୋଛୁ ପୋଛୁ ନଇଁପଡ଼ି ବଡ଼ବାବୁଙ୍କ ପାଦଧୂଳି ନେଇ ମୁଣ୍ଡରେ ମାରିଲା ।

# ଶେଷ

ବିନ୍ଦୁ ତା' ଘରେ କେତେଦିନ ଯେ ଅନାହାରରେ ରହୁଥିଲା, ସେକଥା କେହି ଜାଣିନଥିଲେ । ସେ ବାପଘରକୁ ଆସିବା ପରଦିନ ତା'ର ଜ୍ୱର ହେଲା । ତା'ପରେ ମୂର୍ଚ୍ଛା ଆରମ୍ଭ ହେଲା ଯେ ଦୁଇ-ତିନଦିନ ଧରି ରହିଲା । ଅନେକ ଚେଷ୍ଟା ପରେ ଯେତେବେଳେ ତା'ର ଚେତନା ଫେରିଆସିଲା, ସେତେବେଳକୁ ସେ ଖୁବ ଦୁର୍ବଳ ହୋଇଯାଇଥିଲା । ନାଡ଼ୀ ଧୀରେ ଧୀରେ ବୁଡ଼ୁଥିଲା । ଏ ଖବର ପାଇ ମାଧବ ଆସିଲା । ବିନ୍ଦୁ ସ୍ୱାମୀର ପାଦଧୂଳି ମୁଣ୍ଡରେ ମାରିଲା । ଦାନ୍ତ ଜାବ ପଡ଼ିଗଲା । ଯେତେ ଅନୁରୋଧ କଲେ ବି କ୍ଷୀର ଟିକିଏ ମଧ୍ୟ ପିଇଲାନାହିଁ ।

ମାଧବ ହତାଶ ସ୍ୱରରେ କହିଲା—"ନଖାଇ ନପିଇ ଏପରି ପ୍ରାଣଟାକୁ ଦହଗଞ୍ଜ କାହିଁକି କରୁଛ ?" ବିନ୍ଦୁର ଆଖିରୁ ଲୁହ ବୋହି-ଆସୁଥାଏ । କ୍ଷୀଣ କଣ୍ଠରେ ସେ କହିଲା—"ମୋର ସମସ୍ତ ସମ୍ପତ୍ତି ଅମୂଲ୍ୟର । ସେଥିରୁ ଦୁଇହଜାର ଟଙ୍କା ନରେନ୍‌କୁ ଦିଅ ଓ ତାକୁ ପାଠ ପଢ଼ାଅ । ସେ ମୋ ଅମୂଲ୍ୟକୁ ଖୁବ୍ ଭଲପାଏ ।" ମାଧବ ବିନ୍ଦୁର କଥାରେ ଭାଙ୍ଗିପଡ଼ିଥିଲା ।

Digitized by srujanika@gmail.com

ତା'ଆ ଆଖିରୁ ଲୁହ ବୋହିଯାଉଥାଏ । ପାଖକୁ ଆସିବାକୁ ମାଧବକୁ କହି—ବନ୍ଦୁ ଧୀରେ ଧୀରେ କହିଲା—ଅମୂଲ୍ୟ ଛଡ଼ା ମୋ ଶତାରେ ଅନ୍ୟ କେହି ଅଗ୍ନି ସଂଯୋଗ କରିବେନି—ସେକଥା ତୁମକୁ ଲଗିଲି ।

ମାଧବ କାନ୍ଦପକାଇଲା । ତଥାପି ଧୀରେ ଧୀରେ କହିଲା—କାହାକୁ ଶେଷରେ ଦେଖିବ ? କାହାକୁ ଡାକିବ ?

ବନ୍ଦୁ ମୁଣ୍ଡ ହଲାଇ କହିଲା—ନା, ଥାଉ ।

ବନ୍ଦୁର ମାଆ ଝିଅକୁ ଆଉଥରେ ଔଷଧ ଖୁଆଇବାକୁ ଚେଷ୍ଟାକଲେ । —କିନ୍ତୁ ସେ ସେମିତି ଦାନ୍ତ ଚିପି ରହିଲା । ମାଧବ ଉଠିପଡ଼ି କହିଲା—"ଆମ କାହା କଥା ତୁମେ ରଖିବନି । ଖୀର ଟିକଏ ସୁଦ୍ଧା ପିଉନାହଁ । କିନ୍ତୁ ଯାହାଙ୍କ କଥା ତୁମେ ଭାଙ୍ଗିପାରିବନି ତାଙ୍କୁ ମୁଁ ଆଣିବାକୁ ଯାଉଛି ।" —ଏହା କହି ମାଧବ ବାହାରକୁ ଚାଲିଆସି ଆଖିରୁ ଲୁହ ପୋଛିଲା । ସେଦିନ ରାତିରେ ବନ୍ଦୁ ଟିକଏ ଆରାମରେ ଶୋଇରହିଲା ।

ରାତି ପାହି ସୂର୍ଯ୍ୟୋଦୟ ହେଲା । ମାଧବ ଘର ଭିତରକୁ ଆସି ଝରକା ଖୋଲିଦେବାରୁ ପ୍ରଭାତର ପ୍ରଥମ ନାଲି ସୂର୍ଯ୍ୟ ରଶ୍ମି ବନ୍ଦୁର ମୁଖ-ମଣ୍ଡଳରେ ପଡ଼ିଲା । ବନ୍ଦୁ ସ୍ୱାମୀର ମୁଖମଣ୍ଡଳକୁ ଚାହିଁ କହିଲା—କେତେ-ବେଳେ ଆସିଲ ?

—ଏବେ ଆସିଲି । ଭାଇ ପାଗଳଙ୍କ ଭଳି କାନ୍ଦୁଛନ୍ତି ।

ବନ୍ଦୁ କହିଲା—ସେକଥା ମୁଁ ଜାଣେ । ତାଙ୍କ ପାଦଧୂଳି ଟିକେ ଆଣିଛ ?

ମାଧବ କହିଲା—ସେ ବାହାରେ ବସିଛନ୍ତି । ଭାଉଜ ଗାଡ଼ିରୁ ଓହ୍ଲାଇ ଗୋଡ଼ହାତ ଧୋଉଛନ୍ତି । ଅମୂଲ୍ୟ ଗାଡ଼ିରେ ଶୋଇପଡ଼ିଛି । ତାକୁ ଆଣିବ କି ?

'ବନ୍ଦୁ କହିଲା—"ପୁଅ ମୋର ଶୋଇଥାଉ ।"—ଏହା କହି କଡ଼ ଲେଉଟାଇଲା ।

Digitized by srujanika@gmail.com

ଅନ୍ନପୂର୍ଣ୍ଣା ଆସି ବନ୍ଦୁର ମୁଣ୍ଡରେ ହାତ ବୁଲାଉ ବୁଲାଉ ବନ୍ଦୁ ଚମକିଉଠିଲା । ଅନ୍ନପୂର୍ଣ୍ଣା ଟିକିଏ ନିଜକୁ ସମ୍ଭାଳି କହିଲେ—ଔଷଧ କାହିଁକି ଖାଉନୁ ? କ'ଣ ମରିବୁ ବୋଲି ନା କ'ଣ ? ବନ୍ଦୁ କିଛି ଉତ୍ତର ନଦେବାରୁ ଅନ୍ନପୂର୍ଣ୍ଣା କହିଲେ—ମୋ ବୁକୁ ଫାଟିପଡ଼ୁଛି, ସେକଥା ତୁ ଅନୁମାନ କରିପାରୁଛୁ ?

ବନ୍ଦୁ କଇଁ କଇଁ ହୋଇ କହିଲା—ହଁ ।

—"ତେବେ ମୋ ଆଡ଼କୁ ଚାହଁା । ତୋତେ ନେବାପାଇଁ ତୋ ଦେଢ଼ଶୁର ନିଜେ ଆସିଛନ୍ତି । ପୁଅ ତୋର କାନ୍ଦି କାନ୍ଦି ଶୋଇପଡ଼ିଛି । ଆମ ସମସ୍ତଙ୍କ କଥା ରଖ । ମୋ ଆଡ଼କୁ ଚାହଁା । ଏତେବେଳେ ଆଉ ଅଭିମାନ କରନାହିଁ ।"

ତଥାପି ବନ୍ଦୁ ମୁହଁ ଫେରେଇଲା ନାହିଁ । ସେ ମୁଣ୍ଡ ହଲାଇ କହିଲା—ଅପା, ଅଗେ···

ଅନ୍ନପୂର୍ଣ୍ଣା କହିଲେ—କଥା ଦେଉଛି—ତୁ ଘରକୁ ଫେରିଗଲେ ସବୁ ଆଗଭଳି ହେବ ।

ଏହି ସମୟରେ ଯାଦବ କୋଠରି ଦୁଆର ମୁହଁରେ ଠିଆହେବାରୁ ଅନ୍ନପୂର୍ଣ୍ଣା ବନ୍ଦୁର ଓଢ଼ଣାଟା ଟାଣିଦେଲେ । ଯାଦବ ବନ୍ଦୁର ଆପାଦମସ୍ତକ ନିରୀକ୍ଷଣ କରି, ଅଶ୍ରୁକୁ ଲୁଚିରଖି ଧୀରେ ଧୀରେ ତାଙ୍କର ଅତି ସ୍ନେହ ଓ ଆଦରର ସାନବୋହୂକୁ କହିଲେ—ମା', ମୁଁ ନିଜେ ଆସିଛି—ଘରକୁ ଫେରିଚାଲ ।

ବନ୍ଦୁର ଶୁଷ୍କ ଓ ଜୀର୍ଣ୍ଣଶୀର୍ଣ୍ଣ ଶରୀର ଦେଖି ସମସ୍ତଙ୍କ ଆଖିରେ ଲୁହ ଆସିଗଲା । ଯାଦବ କହିଲେ—ମା' ତୁମେ ଯେତେବେଳେ ଟ୍ରୁଟଟିଏ ହୋଇଥିଲ, ମୁଁ ନିଜେ ଆସି ତୁମକୁ ମୋ ଘରକୁ ବୋହୂକରି ନେଇଥିଲି । ଆଉଥରେ ଆସିବି ବୋଲି ଭାବିନଥିଲି, ହେଲେ ମା' ଜାଣିରଖ, ଆସିଛି ଯେତେବେଳେ ହୁଏତ ସାଙ୍ଗରେ ମୋ ଘରର ଲକ୍ଷ୍ମୀଙ୍କୁ ନେଇକରି ଯିବ,

Digitized by srujanika@gmail.com

ନଚେତ୍ ଏ ମୁହଁ ନେଇ ଆଉ ଫେରିବନି । ମା' ତୁମେ ତ ଜାଣିଛ, ମୁଁ କେବେ ମିଛ କୁହେନାହିଁ ।

ଏହା କହି ଯାଦବ ବାହାରକୁ ଚାଲିଗଲେ । ବନ୍ଦୁ ମୁହଁ ଫେରାଇ କହିଲା—ନାନୀ, କ'ଣ ଟିକିଏ ଖାଇବାକୁ ଦିଅ । ମୋର ଅମୂଲ୍ୟଧନକୁ ମୋ ପାଖରେ ଶୁଆଇଦେଇ ତମେ ସମସ୍ତେ ବାହାରକୁ ଯାଇ ବିଶ୍ରାମ କର । ଆଉ ଭୟ କରିବାର ନାହିଁ—ମୁଁ ଏଥର ମରିବନି—ବଞ୍ଚିବ ।

---

Digitized by srujanika@gmail.com